# ବିଂଶ ଶତାବ୍ଦୀର ପୃଥିବୀ

ଲେଖକ :
ପ୍ରମୋଦ କୁମାର ମହାପାତ୍ର

ପ୍ରକାଶକ :
ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଥମ ପ୍ରକାଶ :
ବିଜୟା ଦଶମୀ, ୧୯୮୯

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍
ଝୋଲସାହି, କଟକ-୭୫୩ ୦୦୧

ମୂଲ୍ୟ : **କୋଡ଼ିଏ ଟଙ୍କା ମାତ୍ର**

BINSA SATABDIRA PRUTHIBI

by :
Pramod Kumar Mahapatra

Published by :
Govinda Charana Patra
Orissa Book Store
Binodbehari, Cuttack-753002

1st Edition : 1989

Price : **Rs. 20/-**

# ନିଜକଥା

କେବଳ ଭାରତ ନୁହେଁ ପୃଥିବୀର ବହୁ ଦେଶର ପୁସ୍ତକରେ ବିଶ୍ୱର ପ୍ରଳୟ ବିଷୟରେ ବହୁ ପ୍ରଖ୍ୟାତ ମହାପୁରୁଷଙ୍କ ଦ୍ୱାରା ଭିନ୍ନ ଭିନ୍ନ ମତ ପ୍ରକାଶ ପାଇଛି । ବର୍ତ୍ତମାନ ଯୁଗର ପରିବର୍ତ୍ତନ ବିଷୟରେ ଆମେରିକା, ଫ୍ରାନ୍‌ସ, ଇଂଲଣ୍ଡ, ଜର୍ମାନୀ, ଇଜିପ୍ଟ, କେତେକ ଆରବ ରାଷ୍ଟ୍ର, ଇରାନ, କେତେକ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ମୁଖ୍ୟ, ପ୍ରମୁଖ ସେମାନଙ୍କର ମତାମତ ଦେଇଛନ୍ତି । ଆମ ଦେଶର ପୁରାଣରୁ ମହାଭାରତରେ ଉଲ୍ଲିଖିତ ପଂକ୍ତି ଦେଖି ଆମେ ପୂର୍ବେ ଲୋକେ କପରି ଥିଲେ ଓ ପୃଥିବୀର ଅବସ୍ଥା କିଣ ଥିଲା ସେ ବିଷୟରେ ସମ୍ୟକ ଜ୍ଞାନ ଲାଭ କରିଥାଉ । ମହାଭାରତର ଶାନ୍ତିପର୍ବରେ ଉଲ୍ଲିଖିତ ଅଛି—

"ନ ବୈରାଜ୍ୟଂ ନ ରାଜାସୀନ୍ନ ଚ ଦଣ୍ଡୋ ନ ଦାଣ୍ଡିକଃ ।
ଧର୍ମେଣୈବ ପ୍ରଜାଃ ସର୍ବା ରକ୍ଷନ୍ତି ସ୍ମ ପରସ୍ପରମ୍ ।
ପାଲ୍ୟମାନାସ୍ତଥାନ୍ୟୋଽନ୍ୟଂ ନରା ଧର୍ମେଣ ଭାରତ ।"

ଅର୍ଥାତ୍ ପ୍ରଥମ ଅବସ୍ଥାରେ ଆମ ପୃଥିବୀ ପୃଷ୍ଠରେ କୌଣସି ନିର୍ଦ୍ଦିଷ୍ଟ ରାଜ୍ୟ ବା ରାଷ୍ଟ୍ର ନଥିଲା । କୌଣସି ରାଜା ନଥିଲେ । ଦଣ୍ଡ ନଥିଲା କିମ୍ବା ଦଣ୍ଡ ଦେବାକୁ ମଧ୍ୟ କେହି ନଥିଲେ । ସମସ୍ତେ ପ୍ରଜା ଥିଲେ ଏବଂ ଆପଣା ଧର୍ମ ବଳରେ ନିଜକୁ ରକ୍ଷା କରୁଥିଲେ । ଗଣତନ୍ତ୍ର ପଦ୍ଧତିରେ ମଣିଷ ଧର୍ମଦ୍ୱାରା ହିଁ ପରସ୍ପର ପରିପାଳିତ ହେଉଥିଲେ ଏବଂ ଶାନ୍ତିରେ ଥିଲେ ।

ମାତ୍ର ସେତେବେଳେ ତ୍ରିକାଳଦର୍ଶୀ ମହର୍ଷି ବ୍ୟାସଦେବ ପୃଥିବୀର ଭବିଷ୍ୟତ ବିଷୟରେ ଲେଖିଥିଲେ—

"ତତୋ ଯୋଜନ ବିଂଶାନାଂ ସହସ୍ରାଣି ଶତାନି ଚ ।
ନିର୍ଦ୍ଦହତ୍ୟଗ୍ନିବୋ ବାୟୁଃ ସ ଚ ସଂବର୍ତ୍ତକୋଽନଳଃ ।"

× × ×

ତତଃ ସମୁଦ୍ରାଃ ସ୍ୱାଂ ବେଳାମତିକ୍ରାମନ୍ତି ଭାରତ ।
ପର୍ବତାଶ୍ଚ ବିଦୀର୍ଯ୍ୟନ୍ତେ ମହୀ ବୃପ୍‌ସୁ ନିମଜ୍ଜତି ।"

ଅର୍ଥାତ ଭବିଷ୍ୟତରେ ପୃଥିବୀର ଅବସ୍ଥା ଏପରି ହେବ ଯେ କୋଡ଼ିଏ ହଜାର ଶହ ଯୋଜନର ଅଗ୍ନି ଓ ପ୍ରଚଣ୍ଡ ଗରମ ବାୟୁ ପ୍ରବାହିତ ହୋଇ ସମସ୍ତଙ୍କୁ ଭସ୍ମ କରିଦେବ । (ବର୍ଷା ଠିକ୍ ସମୟରେ ହେବନାହିଁ) ସମୁଦ୍ର ସୀମା ଲଙ୍ଘନ କରି ସ୍ଥଳ ଭାଗକୁ ମାଡ଼ି ଆସିବ । ପର୍ବତ ବିଦୀର୍ଣ୍ଣ ହୋଇ ଆଗ୍ନେୟଗିରିରୁ ଅଗ୍ନି ଉଦ୍‌ଗିରଣ ହେବ । ପୃଥିବୀରେ ମହା ପ୍ରଳୟ ସଂଗଠିତ ହେବ—ଇତ୍ୟାଦି ।

ପୁରାତନ କାଳର ବହୁ ମୁନିଋଷିଙ୍କ ମତ ବ୍ୟତୀତ ବହୁ ମହାପୁରୁଷ ମଧ୍ୟ ସୃଷ୍ଟିର ବିଲୟ ବିଷୟରେ ଯେଉଁସବୁ ମତାମତ ଦେଇ ଯାଇଛନ୍ତି ବର୍ତ୍ତମାନ ଆମ ରାଜ୍ୟ, ଦେଶ ସର୍ବୋପରି ପୃଥିବୀର ବିଭିନ୍ନ ଅବସ୍ଥାକୁ ଲକ୍ଷ୍ୟକଲେ ସେମାନଙ୍କର ଭବିଷ୍ୟତ ବାଣୀ ସତେ ଯେପରି ସତ୍ୟ ହେବାକୁ ଯାଉଛି— ଏପରି ମନେ ହୁଏ ।

ବିଜ୍ଞାନ ବଳରେ ବଳୀଆନ ହୋଇ ଏବେ ଆମେ ଏକବିଂଶ ଶତାବ୍ଦୀକୁ ସ୍ୱାଗତ କରିବାକୁ ଯାଉଛୁ । ଆମେରିକାରେ ପ୍ରତିଷ୍ଠିତ ଗବେଷଣା ସଂସ୍ଥା "ଓ୍ୱାର୍ଲଡ଼ ଓ୍ୱାଚ ଇନଷ୍ଟିଚ୍ୟୁଟ" ଗତ ଫେବୃୟାରୀ ମାସ ୧୧ ତାରିଖରେ ଏକ ଆବେଗପୂର୍ଣ୍ଣ ବାର୍ତ୍ତା ପୃଥିବୀ ବାସୀଙ୍କୁ ଶୁଣାଇଛନ୍ତି, ତାହା ଆମ ସମସ୍ତଙ୍କ ପକ୍ଷେ ଚିନ୍ତାର ବିଷୟ ହୋଇଛି । ବହୁ ବିଶେଷଜ୍ଞ, ବୈଜ୍ଞାନିକ ଏହି ପ୍ରତିଷ୍ଠାନର ସଭ୍ୟ ଅଛନ୍ତି । ବର୍ତ୍ତମାନ ପୃଥିବୀରେ ଯେଭଳି ପରିବେଶ ଲୋପ, ପ୍ରଦୂଷଣ, ମୃତ୍ତିକା କ୍ଷୟ ପ୍ରଭୃତି ଦେଖା ଦେଇଛି ଓ ପୃଥିବୀର ଉତ୍ତାପ ଯେଭଳି କ୍ରମେ ବଢୁଛି ସେଥିରେ ପୃଥିବୀର ସ୍ଥିତି ଆଉ ବେଶିଦିନ ସମ୍ଭବ ନୁହେଁ ବୋଲି ଏହି ସଂସ୍ଥା ପକ୍ଷରୁ ଘୋଷଣା କରି ଯାଇଛି । ଖୁବ ଶୀଘ୍ର ଏସବୁ ବିପଦର ସ୍ଥାୟୀ ପ୍ରତିକାର ନହେଲେ ଆମ ପୃଥିବୀର ଧ୍ୱଂସ ଅନିବାର୍ଯ୍ୟ । ପ୍ରତିବର୍ଷ ପ୍ରାୟ ୨କୋଟି ୩ ଲକ୍ଷ ଟନ ଉର୍ବର ମୃତ୍ତିକା ଭୂଭାଗରୁ ସମୁଦ୍ରକୁ ଧୋଇ ହୋଇ ଯାଉଛି । ଦକ୍ଷିଣ ଏସିଆରେ ସବୁଠାରୁ ଅଧିକା ମୃତ୍ତିକା କ୍ଷୟ ଘଟୁଛି । ଆମ ଦେଶରେ ଗଙ୍ଗା ଓ ବ୍ରହ୍ମପୁତ୍ର ତଥା ଅନ୍ୟାନ୍ୟ ବହୁ ନଦୀଦ୍ୱାରା ପ୍ରତିବର୍ଷ ଲକ୍ଷ ଲକ୍ଷ ଟନ ଉର୍ବର ମୃତ୍ତିକା ସମୁଦ୍ରକୁ ଧୋଇ ଯାଉଛି ।

ଏହା ବ୍ୟାପକ ପୃଥିବୀର ଉତ୍ତାପ କ୍ରମେ ବଢ଼ି ଥିବାରୁ ଆଉ କେତେବର୍ଷ ମଧ୍ୟରେ ବଙ୍ଗଳା ଦେଶର ଏକ ବୃହତ୍ତାଂଶ, ସମଗ୍ର ମାଲଦ୍ୱୀପ, ଲକ୍ଷାଦ୍ୱୀପ ଓ ଅନ୍ୟାନ୍ୟ ବହୁ ଦେଶ ଓ ଦ୍ୱୀପ ସମେତ ସମୁଦ୍ର ଉପକୂଳବର୍ତ୍ତୀ ବହୁ ବିଭବଶାଳୀ ସହର ସମୁଦ୍ର ଗର୍ଭରେ ଲୀନ ହୋଇଯିବା ଅବସ୍ଥା ଦେଖା ଦେଲାଣି ।

ଏହା ବ୍ୟାପକ ପୃଥିବୀ ପୃଷ୍ଠକୁ ମାଡି ଆସୁଥିବା ଅନ୍ୟ ବିପଦ ସବୁ କଣ ? ଯାହାପାଇଁ ପୃଥିବୀର ସ୍ଥିତି ମଧ୍ୟ ବିପନ୍ନ ହେବା ଅବସ୍ଥାରେ ଏବେ ପହଞ୍ଚିଛି । ଏହିସବୁ ବିପତ୍ତିରୁ ପୃଥିବୀକୁ ରକ୍ଷା କରିବାର କଣ କୌଣସି ବାଟ ନାହିଁ ?

ଏବେ ଆମ ସମସ୍ତଙ୍କ ଅଜାଣତରେ ଆମର ବାସସ୍ଥଳୀ ସମଗ୍ର ପୃଥିବୀ ଏକ ଅଜଣା, ଆତଙ୍କମୟ ଭବିଷ୍ୟତ ଆଡ଼କୁ ଆଗେଇ ଚାଲିଛି । ପୃଥିବୀକୁ ଏହି ବିପତ୍ତି ଆଡ଼କୁ ନେବାରେ ଆମେ ସଭ୍ୟ ମଣିଷମାନେ ହିଁ ମୁଖ୍ୟତଃ ଦାୟୀ । ଆମ ଦେଶ ତଥା ରାଜ୍ୟର ସାଧାରଣ ଲୋକେ ଏ ବିଷୟରେ କିଛି ଜାଣି ନାହାନ୍ତି । ବର୍ତ୍ତମାନ ମଧ୍ୟ ସମୟ ଅଛି । ଆମର ଏହି 'ସୁନ୍ଦର ସବୁଜ ବନାନୀ ଘେରା ପୃଥିବୀ ତଥା ହଜାର ହଜାର ଜୀବ ଜନ୍ତୁଙ୍କୁ ଧ୍ୱଂସ ମୁଖକୁ ଠେଲି ନଦେଇ ଆମ ସମସ୍ତଙ୍କୁ ନିଜକୁ ଏବଂ ଅନ୍ୟମାନଙ୍କୁ ରକ୍ଷା କରିବାକୁ ପଡ଼ିବ । ଏଥିପାଇଁ ସମସ୍ତଙ୍କୁ ଅନ୍ତତଃ ଏହିସବୁ ବିପଦ ବିଷୟରେ ଜଣାଇବାକୁ ହେବ । ଲୋକମାନେ ଶିକ୍ଷିତ ହେଲେ, ସମସ୍ତ ଘଟଣାବଳୀ ଜାଣିଲେ ହୁଏତ ଏହି ସମସ୍ୟାରୁ କେତେକ ପରିମାଣରେ ମୁକ୍ତି ମିଳିପାରେ ।

ହଜାର ହଜାର ବର୍ଷ ତଳେ ମହର୍ଷି ବ୍ୟାସଦେବ ଦେଇ ଯାଇଥିବା ଭବିଷ୍ୟତ ବାଣୀ ଅନୁସାରେ ବର୍ତ୍ତମାନ ମହାସାଗର କୂଳ ଲଙ୍ଘନ କରି ସ୍ଥଳଭାଗ ଆଡକୁ ମାଡ଼ି ଆସିବା ଅବସ୍ଥାରେ ପହଞ୍ଚିଛି । ତେଣୁ ସେ ତଥା ଅନ୍ୟାନ୍ୟ ମହାପୁରୁଷଙ୍କର ଅନ୍ୟାନ୍ୟ ଭବିଷ୍ୟତବାଣୀ କାହିଁକି ସତ୍ୟ ନହେବ ?

ଏହି ପୁସ୍ତକରେ ପୃଥିବୀ ପୃଷ୍ଠକୁ ମାଡ଼ି ଆସୁଥିବା କେତେକ

ଗୁରୁତ୍ୱପୂର୍ଣ୍ଣ ବାର୍ଷିକୀ ବିଷୟରେ କେତୋଟି ପ୍ରବନ୍ଧ ସ୍ଥାନ ପାଇଛି । ଓଡ଼ିଶାର ସାଧାରଣ ଜନତା ଏହି ପୁସ୍ତକ ପଢ଼ି ବର୍ତ୍ତମାନ ଆମ ଆଗରେ ଉଭା ହୋଇଥିବା ଏହିସବୁ ଗୁରୁତର ସମସ୍ୟା ପ୍ରତି ସଚେତନ ହୋଇ ପାରିଲେ ଶ୍ରମ ସାର୍ଥକ ହେବ ।

ଏହି ପୁସ୍ତକରେ ପ୍ରକାଶିତ ଅଧିକାଂଶ ପ୍ରବନ୍ଧ ପୂର୍ବରୁ 'ଝଙ୍କାର' 'ସହକାର' 'ଅମୃତାୟନ' 'ଗୋକର୍ଣ୍ଣିକା' 'ଉତ୍କଳ ସନ୍ତାନ' 'ତମସା' 'ବିଶାଳ ଭାରତ' 'ଅକ୍ଷପାଦ' ପ୍ରଭୃତି ପତ୍ରିକାରେ ପ୍ରକାଶିତ ହୋଇଛି ।

ପ୍ରବନ୍ଧଗୁଡ଼ିକ ପ୍ରକାଶିତ ହେବା ପରେ ମୁଁ ଓଡ଼ିଶାର ବିଭିନ୍ନ ଅଂଚଳରୁ ବିଭିନ୍ନ ଶ୍ରେଣୀର ଲୋକଙ୍କ ଠାରୁ ବହୁ ପତ୍ର ପାଇଛି । ଏହି ଅବସରରେ ପତ୍ରିକାର ସମ୍ପାଦକ ଓ ମୋତେ ପତ୍ରଲେଖି ଅଧିକ ଉତ୍ସାହ ଓ ପ୍ରେରଣା ଦେଇଥିବା ବନ୍ଧୁମାନଙ୍କୁ ଧନ୍ୟବାଦ ଜଣାଉଛି ।

ଓଡ଼ିଶା ବୁକ୍ ଷ୍ଟୋରର ସ୍ୱତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ଗୋବିନ୍ଦ ଚରଣ ପାତ୍ରଙ୍କ ପ୍ରେରଣା ଯୋଗୁ ଏହି ପୁସ୍ତକ ଲେଖିବା ସମ୍ଭବ ହୋଇ ପାରିଛି । ଏହି ଅବସରରେ ତାଙ୍କୁ ମୋର ଗଭୀର କୃତଜ୍ଞତା ଜଣାଉଛି । ଗୁରୁ ପ୍ରସନ୍ନ ପ୍ରେସର ମାଲିକ ଶ୍ରୀଯୁକ୍ତ ପ୍ରସନ୍ନ ବାବୁ ଅତିଶୀଘ୍ର ନିର୍ଭୁଲ ଭାବେ ପୁସ୍ତକଟିକୁ ମୁଦ୍ରଣ କରିପାରି ଥିବାରୁ ତାଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି । ମୋର ଅଗଣିତ ବନ୍ଧୁ ଓ ସହକର୍ମୀ ମୋତେ ବହୁ ସମୟରେ ପ୍ରେରଣା ଦେଇ ଥିବାରୁ ସମସ୍ତଙ୍କୁ ଧନ୍ୟବାଦ ଜଣାଉଛି ।

ବର୍ତ୍ତମାନ ପୃଥିବୀରେ ଦେଖା ଦେଇଥିବା ବହୁ ସମସ୍ୟା ଯୋଗୁ ବୁଦ୍ଧିଜୀବୀ ମାନଙ୍କ ଭିତରେ ଦେଖା ଦେଇଥିବା ବୈରାଗ୍ୟ ଭାବ ଶୀଘ୍ର ଦୂର କରିବା ପାଇଁ ମାନବ ସମାଜ ଅଗ୍ରସର ହେଉ ଏବଂ ପୃଥିବୀ ଆକାଶରେ ଏବେ ଦେଖା ଦେଇଥିବା କଳା ବାଦଲ ପ୍ରଶମିତ ହୋଇ ଭ୍ରାତୃଭାବ ପ୍ରତିଷ୍ଠିତ ହେଉ ଓ ନବ ପ୍ରଭାତର ଆଲୋକ ବିଚ୍ଛୁରିତ ହେଉ । ଏକବିଂଶ ଶତାବ୍ଦୀର ମାନବ ପୃଥିବୀ ଧ୍ୱଂସର କାରଣ ନହୋଇ ପୃଥିବୀ ଗଠନର କାରିଗର ହେଉ— ଏହାହିଁ କାମନା ।

—**ଲେଖକ**

# ସୂଚୀ





# ପୃଥିବୀର ଧ୍ୱଂସ କେବେ ?

ଆମମାନଙ୍କ ମଧ୍ୟରେ ଏକ ପ୍ରବାଦ ପ୍ରଚଳିତ ଅଛି, "ମନ୍ତ୍ରୀ ମଣ୍ଡଳେ ଜନ୍ମ ହୋଇ, ଦେବତା ହେଲେ ବି ମରଇ" । ଆମ ପୃଥିବୀ



ପୃଷ୍ଠରେ ଯେତେ ଜୀବଜନ୍ତୁ, ଗଛଲତା, ସଜୀବ ପଦାର୍ଥ ଜନ୍ମ ହୋଇଛନ୍ତି

ସେମାନେ ଦିନେ ନା ଦିନେ ନିଶ୍ଚୟ ମୃତ୍ୟୁ ବରଣ କରିଛନ୍ତି । କେବଳ ଜୀବଜଗତ ନୁହେଁ, ସୌର ମଣ୍ଡଳର କୌଣସି ପଦାର୍ଥ, ବସ୍ତୁ ସବୁଦିନ ପାଇଁ ତିଷ୍ଠି ରହିପାରିବ ନାହିଁ । ସୌର ମଣ୍ଡଳରେ ଥିବା କୋଟି କୋଟି ନକ୍ଷତ୍ର, ଗ୍ରହ, ଉପଗ୍ରହ ସମସ୍ତେ ଚଳଚଞ୍ଚଳ । ମହାକାଶ ଆଡ଼କୁ ଗୁହିଁଲେ ଆମ ପୃଥିବୀ ଓ ସୂର୍ଯ୍ୟ ଅନ୍ୟ ତାରକା ଇତ୍ୟାଦିଙ୍କ ତୁଳନାରେ କେତେ ଛୋଟ !

ଅତୀତରେ ଆମେ ଆମର ପୁରାଣ, ଐତିହାସିକ ତଥ୍ୟରୁ ମଧ୍ୟ ଦେଖୁ ଯେ କୌଣସି ସମାଜ, ଗୋଷ୍ଠୀ ବା ରାଜବଂଶ ସଭ୍ୟତା ଓ ଉନ୍ନତିର ଚରମ ସୀମାରେ ପହଞ୍ଚିବା ପରେ ଆପେ ଆପେ ଏହାର ବିଲୋପ ସଂଘଟିତ ହୋଇଛି । ଆମ ପୃଥିବୀର ବୟସ ପ୍ରାୟ ପାଞ୍ଚ ଶହ କୋଟି ବର୍ଷ ହେଲା । ଯଦି ପୃଥିବୀ ପୃଷ୍ଠରେ ବାସ କରୁଥିବା ଶହ ଶହ ଜୀବଜନ୍ତୁ, ସଜୀବ ପଦାର୍ଥଙ୍କର ବିଲୋପ ଦିନେ ନା ଦିନେ ଘଟିବ, କେହି ଏଠାରେ ଚିରସ୍ଥାୟୀ ନୁହନ୍ତି, ତେବେ ଏମାନଙ୍କୁ ଧରି ରଖିଥିବା ପୃଥିବୀ ଦିନେ ପ୍ରଳୟ ଗର୍ଭରେ ପଡ଼ି ସମ୍ପୂର୍ଣ୍ଣ ନଷ୍ଟ ନ ହେବ କାହିଁକି ? ଏ ବିଷୟରେ ବିଶ୍ୱର ବହୁ ଗବେଷକ ବର୍ତ୍ତମାନ ଗବେଷଣାରତ ।

ଦିନ ଥିଲା ଯେତେବେଳେ ସରୀସୃପ ରାକ୍ଷସ ଆକୃତିର ଡାଏନୋସରସ୍ ପରି ବିରାଟକାୟ ଜନ୍ତୁ ପୃଥିବୀ ପୃଷ୍ଠରେ ରାଜତ୍ୱ କରୁଥିଲେ । ଏହାର ଆକାର ହାତୀଠାରୁ ୫୦।୬୦ ଗୁଣ ବଡ଼ ଥିଲା । ଏହି ଜନ୍ତୁ ଯେପରି ବିରାଟ ସେହିପରି ଭୟଙ୍କର ମଧ୍ୟ । ଏମାନେ ପ୍ରାୟ ଏକଶହ କୋଟି ବର୍ଷ ଧରି ପୃଥିବୀ ପୃଷ୍ଠରେ ବଞ୍ଚିରହି ସମୂଳେ ଧ୍ୱଂସ ହୋଇଗଲେ । ଏତେ ବିରାଟକାୟ ଜନ୍ତୁ ଏତେ ଦିନ ଧରି ପୃଥିବୀ ପୃଷ୍ଠରେ ବାସ କରି ଦିନେ ସମୂଳେ ପୃଥିବୀ ପୃଷ୍ଠରୁ ଉଭେଇ ଯିବ ଏକଥା କ'ଣ କିଏ କଳ୍ପନା କରିଥିଲା ? ମାତ୍ର ଏହା ତ ପୁଣି ସମ୍ଭବ ହେଲା !

ଆଜିର ସଭ୍ୟ ମାନବର ଜନ୍ମ ପୃଥିବୀ ପୃଷ୍ଠରେ ବହୁ ଦିନରୁ ସଂଘଟିତ ହେଲାଣି । ମାଙ୍କଡ଼ରୁ ମଣିଷର କ୍ରମବିକାଶ ଘଟି ଏବେ ମାନବ

ସଭ୍ୟତାର ଚରମ ସୀମାରେ ପହଞ୍ଚିଥାଏନ୍ତି ଏବଂ ନିଜକୁ ପୃଥିବୀ ପୃଷ୍ଠର ସର୍ବଶ୍ରେଷ୍ଠ ବୁଦ୍ଧିମାନ ଜୀବରୂପେ ପରିଚୟ ଦେଉଛନ୍ତି ।

ବୈଜ୍ଞାନିକମାନେ ମତ ଦେଲେଣି ଯେ ଆମ ପୃଥିବୀର ଆୟୁଷ ଆଉ ମାତ୍ର ୧୫୦ ଲକ୍ଷ ବର୍ଷ । ଏହା ପରେ ପୃଥିବୀ ଆପେ ଆପେ ଧ୍ୱଂସ-ପ୍ରାପ୍ତ ହେବ । ହୁଏତ ସମୁଦ୍ରର ଉତ୍ତାଳ ଜଳରାଶି ମାଡ଼ିଆସି ସମଗ୍ର ସ୍ଥଳଭାଗର ଜୀବଜନ୍ତୁଙ୍କୁ ନାଶ କରିପାରେ ବା ଭୂମିକମ୍ପ ପରି କୌଣସି ପ୍ରଳୟ ଘଟି ପୃଥିବୀପୃଷ୍ଠ ଖଣ୍ଡ ବିଖଣ୍ଡ ହୋଇଯାଇପାରେ । ପ୍ରାକୃତିକ ପ୍ରଳୟ ବ୍ୟତୀତ ପୃଥିବୀର ଧ୍ୱଂସ ପାଇଁ ଅନ୍ୟ କୌଣସି ପରିସ୍ଥିତି ଦାୟୀ ହେବ ନାହିଁ ।

ଆମେ ଆଜି ଯଦି ଆଧୁନିକ ମଣିଷର କାର୍ଯ୍ୟକଳାପକୁ ଲକ୍ଷ୍ୟ କରିବା ଏବଂ ମଣିଷ ଦ୍ୱାରା ପୃଥିବୀ ପୃଷ୍ଠରେ ପ୍ରକୃତି ଓ ପରିବେଶ ତଥା ବାୟୁମଣ୍ଡଳ ଉପରେ କରାଯାଉଥିବା ବ୍ୟଭିଚାର ବିଷୟରେ ଆଲୋଚନା କରିବା ତେବେ ପୃଥିବୀ ଆଉ ୧୫୦ ଲକ୍ଷ ବର୍ଷର ବହୁ ପୂର୍ବରୁ ମଧ୍ୟ ଯେ ନିର୍ବୋଧ ବିଜ୍ଞାନୀ ମଣିଷମାନଙ୍କ ଦ୍ୱାରା ଧ୍ୱଂସ ହୋଇଯିବ ତାହା ଯେ କେହି ହୃଦୟଙ୍ଗମ କରିପାରିବେ । ବର୍ତ୍ତମାନର ସଭ୍ୟ, ବିଜ୍ଞାନୀ ମାନବ ତା'ର ଜାଣତରେ ନିଜ ଜୀବନ ତଥା ସମଗ୍ର ଜୀବଜଗତ ଏବଂ ଉଦ୍ଭିଦ ଜଗତର ଜୀବନ ସହିତ କିପରି ବେପରୁଆ ଭାବରେ ଖେଳ ଖେଳୁଛି ଏବଂ ପରିଣାମରେ ନିଜେ ପୃଥିବୀ ଧ୍ୱଂସର କାରଣ ହେବାକୁ ଯାଉଛି ଏହା କ୍ରମେ ଜଣା ପଡ଼ିଲାଣି । ଯେପରି ଜଣାଯାଉଛି ପୃଥିବୀର ଧ୍ୱଂସ ନିକଟରୁ ଖୁବ୍ ନିକଟତର ହୋଇ ଆସିଲାଣି ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ବିଭୀଷିକା ସମଗ୍ର ମାନବସମାଜ ମନରେ ଏକ କଳା ଦାଗ ଟାଣିଦେଇ ଯାଇଥିଲା । ଜାପାନର ହିରୋସିମା ଓ ନାଗାସାକି ଉପରେ ସେତେବେଳେ ଏକ ଛୋଟ ଓ କମ କ୍ଷମତାସମ୍ପନ୍ନ ପରମାଣୁ ବୋମା ପଡ଼ିବା ଫଳରେ ସେହି ସହର ଦ୍ୱୟ ଓ ସେ ଅଞ୍ଚଳରେ ପ୍ରଳୟର ତାଣ୍ଡବଲୀଳା ଦେଖା ଦେଲା ଏବଂ ଏହାର ପ୍ରଭାବରେ

ଲକ୍ଷ ଲକ୍ଷ ଲୋକ ମୁହୂର୍ତ୍ତକ ମଧ୍ୟରେ ପୋକ ମାଛି ପରି ମରିଗଲେ । କେତେ ବିକଳାଙ୍ଗ ହୋଇ ଆର୍ତ୍ତଚିତ୍କାର କରି ସବୁଦିନ ପାଇଁ ପଙ୍ଗୁ ହୋଇ ପଡ଼ିରହିଲେ । ପରମାଣୁ ବୋମା ତା'ର ଭୟାବହତା ବିଷୟରେ ମାନବ ସମାଜର ଆଖି ଖୋଲି ଦେଲା । ଏବେ ସମଗ୍ର ବିଶ୍ୱବାସୀ ମାନବ ସମାଜ ଶାନ୍ତିରେ ଅନ୍ତତଃ ଆତ୍ମସନ୍ତୋଷ ଲାଭକରି ପାରୁଛନ୍ତି ଯେ ଏହି ୪୦ ବର୍ଷ ଭିତରେ ଆମ ପୃଥିବୀ ପୃଷ୍ଠରେ ଆଉ କୌଣସି ଠାରେ ପରମାଣୁ ଯୁଦ୍ଧ ହୋଇନାହିଁ । ମାତ୍ର ଭବିଷ୍ୟତରେ ଯେ ପୃଥିବୀରେ ଆଉ ଆଦୌ ପରମାଣୁ ଯୁଦ୍ଧ ହେବନାହିଁ ଏ ବିଷୟରେ ସମଗ୍ର ମାନବସମାଜ ଆଜି ସନ୍ଦେହ ମୁକ୍ତ କି ? ଏବେ ସାରା ବିଶ୍ୱରେ ଦଶ ହଜାର ମେଗା ଟନରୁ ଅଧିକ ଓଜନର ଶକ୍ତିଶାଳୀ ପରମାଣୁ ବୋମା, ଭୟାବହ ହାଇଡ୍ରୋଜେନ ବୋମା ଓ ବହୁ ମାରାତ୍ମକ ମାରଣାସ୍ତ୍ର ସଜ୍ଜିତ ହୋଇ ରହିଛି । ଯଦି କୌଣସି ଅସାବଧାନତା ବଶତଃ ଏହି ପରମାଣୁ ଅସ୍ତ୍ରରେ ବିସ୍ଫୋରଣ ଘଟେ ତେବେ ଏହା ସମଗ୍ର ମାନବସମାଜ ସହିତ ପୃଥିବୀ ପୃଷ୍ଠର ସମସ୍ତ ଜୀବଜନ୍ତୁଙ୍କ ଜୀବନ ଏବଂ ଉଦ୍ଭିଦ ଜଗତକୁ ନାଶ କରି ପୃଥିବୀ ପୃଷ୍ଠକୁ ଏକ ମହା ଶ୍ମଶାନରେ ପରିଣତ କରିଦେବ । ତେଣୁ ପୃଥିବୀ ପୃଷ୍ଠର ପ୍ରତ୍ୟେକ ଜୀବ ବର୍ତ୍ତମାନ ସେମାନଙ୍କ ମୁଣ୍ଡ ଉପରେ ଏକ ତୀକ୍ଷ୍ଣ ଖଡ଼୍ଗ ସୂତାରେ ବାନ୍ଧିରଖି ତାହା ତଳେ ମହା ଆନନ୍ଦରେ ବସି ରହିଛନ୍ତି । କେତେବେଳେ ଏହାର ସୂତା ଛିଣ୍ଡି ମାନବ ସମେତ ସମସ୍ତଙ୍କର ଜୀବନ ନେବ ତାହା କହିହେଉ ନାହିଁ । ମଣିଷର ଜୀବନ ବର୍ତ୍ତମାନ ମଣିଷ ଦ୍ୱାରା ବିପନ୍ନ ହୋଇଛି ।

ବିଶ୍ୱରେ ବଞ୍ଚିରହିବା ପାଇଁ ପ୍ରତ୍ୟେକ ସଜୀବ ପଦାର୍ଥ ଏକ ସ୍ୱତନ୍ତ୍ର ପରିବେଶ ଆବଶ୍ୟକ କରିଥାଆନ୍ତି , ଯାହା ବର୍ତ୍ତମାନ ପୃଥିବୀ ପୃଷ୍ଠର କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟା ବୃଦ୍ଧି ସହିତ ଓ ଅନ୍ୟାନ୍ୟ ବହୁ କାରଣରୁ ତଥା ଆଣବିକ ଅସ୍ତ୍ର ଉତ୍ପାଦନ ଓ ପରୀକ୍ଷା ଦ୍ୱାରା ବିପନ୍ନ ହେବାରେ ଲାଗିଛି । ବହୁ ମୂଲ୍ୟବାନ ଜୀବଜନ୍ତୁ ଓ ଉଦ୍ଭିଦ ପ୍ରତିକୂଳ ପରିବେଶ ଯୋଗୁ ସମ୍ପୂର୍ଣ୍ଣ ବା ଆଂଶିକରୂପେ ପୃଥିବୀ ପୃଷ୍ଠରୁ ଉଭେଇ ଗଲେଣି । ଜନସଂଖ୍ୟାର ଦ୍ରୁତ ବୃଦ୍ଧି ଓ ଗୁରୁତର ଖାଦ୍ୟ ସଙ୍କଟ ଭଳି

ବହୁ ଗୁରୁତର ସମସ୍ୟା ବର୍ତ୍ତମାନ ପୃଥିବୀ ପୃଷ୍ଠରେ ଦେଖାଦେଇ ଏକପ୍ରକାର ଅନିଶ୍ଚିତ ଅବସ୍ଥା ସୃଷ୍ଟି କରିଥିବା ବେଳେ ସେଥିରୁ ମାନବ ସମାଜକୁ ରକ୍ଷା କରିବାକୁ ଚେଷ୍ଟା ନକରି କେତେକ ମୁଷ୍ଟିମେୟ ଧନୀ ରାଷ୍ଟ୍ର ନିଜର ବଡ଼ିମା ଦେଖାଇବାକୁ ଯାଇ ପାଗଳପରି କୋଟି କୋଟି ଟଙ୍କା ଅସ୍ତ୍ରଶସ୍ତ୍ର ନିର୍ମାଣ ଓ ଯୁଦ୍ଧ ସରଞ୍ଜାମ ନିର୍ମାଣ ଓ ଯୁଦ୍ଧରେ ଖର୍ଚ୍ଚ



କରିବାରେ ଲାଗିଛନ୍ତି । ଏଣେ ଧରାପୃଷ୍ଠରେ ପରିବେଶର ଦ୍ରୁତ ବିଲୋପ ଘଟି ଅଧିକାଂଶ ସ୍ଥାନରେ ଠିକ୍ ସମୟରେ ବର୍ଷା ହେଉନାହିଁ । ଆଫ୍ରିକାର କେତେକ ଦେଶରେ ଗତ ୫ ବର୍ଷ ଧରି ଦୁର୍ଭିକ୍ଷ ଲାଗିରହିଛି । ପୃଥିବୀର ବିଭିନ୍ନ ଅଞ୍ଚଳରେ ଅନିଶ୍ଚିତ ପାଣିପାଗ ଅବସ୍ଥା ଦେଖା-

ଦେଇଛନ୍ତି । ଚଳନ୍ତ ଦଶନ୍ଧୀରେ ଆଫ୍ରିକାର ଇଥୋପିଆ, ସୁଦାନ ପ୍ରଭୃତି ଦେଶରେ ଜଳମନ୍ଥନ ଵର୍ଷଣକାରୀ ଦୁର୍ଭିକ୍ଷ ସଂଘଟିତ ହୋଇ ଲକ୍ଷ ଲକ୍ଷ ମଣିଷ, ଶିଶୁ, ପଶୁପକ୍ଷୀ ଯେଉଁଭଳି ମୋକ ମାଛ ପରି ଖାଇବାକୁ ନପାଇ ମରିଗଲେ, ସେଥିପ୍ରତି ଯେପରି କାହାର ଲକ୍ଷ ନାହିଁ । ଏକ ସ୍ଥିର ଜଳ-ରାଶି ପୂର୍ଣ୍ଣ ପୁଷ୍କରିଣୀରେ ଏକ ବଡ଼ ଢେଳା ଫୋପାଡ଼ିଲେ ସେଥିରୁ ଉତ୍ତାଳ ତରଙ୍ଗ ସୃଷ୍ଟି ହୋଇ ଯେପରି ଚତୁଃପାର୍ଶ୍ୱକୁ ମାଡ଼ିଯାଇ କୂଳ ଲଂଘନ କରେ, ଆଜି ସେହିପରି ଆକାଶର ସ୍ଥିର ବାୟୁମଣ୍ଡଳରେ ନାନା ପ୍ରକାର ବିସ୍ଫୋରଣ ଘଟି ଆକାଶମଣ୍ଡଳର ମେଘମାଳା ଓ ଅନ୍ୟାନ୍ୟ ସ୍ଥିର ବାୟୁମଣ୍ଡଳରେ କୃତ୍ରିମ ହଲଚଲ ସୃଷ୍ଟି କରାଯାଇ ଅସ୍ଥିରତା ସୃଷ୍ଟି କରାଯାଉଛି ।

ପୃଥିବୀ ପୃଷ୍ଠରେ ପରମାଣୁ ଯୁଦ୍ଧ ହେଲେ ଯୁଦ୍ଧ ଅଞ୍ଚଳରେ ଘନ ଅନ୍ଧକାର ଘୋଟିଯିବ । ବାୟୁମଣ୍ଡଳର ତାପମାତ୍ରା ଖୁବ୍ କମିଯାଇ ଘନ କୁହୁଡ଼ି ମାଡ଼ି ଆସିବ ଏବଂ ସମସ୍ତ ଜୀବଜଗତକୁ ଅଣନିଶ୍ୱାସୀ କରି ଜାଳି-ପୋଡ଼ି ମାରିଦେବ । ପ୍ରଶାନ୍ତ ମହାସାଗରରେ କରାଯାଇଥିବା ଏକ ଆଣବିକ ବୋମା ପରୀକ୍ଷାରୁ ଜଣାଯାଇଛି ଯେ ବିସ୍ଫୋରଣ ପରେ ପ୍ରଳୟ ପରି ଅଗ୍ନିଶିଖା ଏକ ବିସ୍ତୃତ ଅଞ୍ଚଳର ସମସ୍ତ ପ୍ରାଣୀ ଓ ଉଦ୍ଭିଦକୁ ଜାଳିପୋଡ଼ି ମାରିଦେବ । ବିସ୍ଫୋରଣଠାରୁ ୨୫,୮୦୦ ବର୍ଗ କିଲୋମିଟର ବ୍ୟାସାର୍ଦ୍ଧ ମଧ୍ୟରେ ଥିବା ସବୁ ଜୀବ ମୃତ୍ୟୁବରଣ କରିବେ । ସ୍ଥଳଭାଗରେ ଏହି ବୋମା ପଡ଼ିଲେ ୧୬୦୦ ବର୍ଗ କିଲୋମିଟର ଅଞ୍ଚଳରେ ଥିବା ଜୀବଜନ୍ତୁ ମୃତ୍ୟୁବରଣ କରିବେ । ମାରାତ୍ମକ ରେଡ଼ିଓ ଆକ୍ଟିଭ ରଶ୍ମିଦ୍ୱାରା ସମସ୍ତେ ଆକ୍ରାନ୍ତ ହୋଇ ପଙ୍ଗୁ ହୋଇଯିବେ ବା ମୃତ୍ୟୁମୁଖରେ ପଡ଼ିବେ । ବୋମା ପଡ଼ିବା ଅଞ୍ଚଳ ଉପରେ ୩ ମାସ ଯାଏ ଥଣ୍ଡା ଓ ଅତ୍ୟଧିକ ଶୀତ ପାଗ ଲାଗିରହି, ଘନ କୁହୁଡ଼ି ମାଡ଼ିଯିବ ଏବଂ ୩ ମାସ ପରେ ଅବସ୍ଥା କ୍ରମେ ଭଲ ଆଡ଼କୁ ଆସିବ । ମାତ୍ର ସେତେବେଳେ ଏହି ଅଞ୍ଚଳରେ କୌଣସି ଜୀବନ୍ତ ପ୍ରାଣୀ ଓ ଉଦ୍ଭିଦ ବଞ୍ଚି ନଥିବେ ।

ଦିଲ୍ଲୀ ଆଣବିକ ଗବେଷଣା କେନ୍ଦ୍ରର ଡେପୁଟି ଡାଇରେକ୍ଟର ଶ୍ରୀ ଏସ୍. କେ. ଶର୍ମା ପରମାଣୁ ବୋମାର ଭୟାବହତା ସମ୍ପର୍କରେ

କହିବାକୁ ଯାଇ ମତ ଦେଇଛନ୍ତି ଯେ ଯଦି କୌଣସି ସ୍ଥାନରେ ଏକ ଅଳ୍ପ କ୍ଷମତା ସମ୍ପନ୍ନ ମାତ୍ର ଏକ ମେଗାଟନ ଓଜନର ଆଣବିକ ବୋମା ପଡ଼େ, ତେବେ ଏହାର ଜ୍ୱଳନ୍ତ ଅଗ୍ନିଶିଖା ସେହି ଅଞ୍ଚଳର ଆକାଶରେ ଦେଡ଼ କଲୋମିଟର ପ୍ରସ୍ଥ ବିଶିଷ୍ଟ ହେବ ଏବଂ ଏହାର ପ୍ରକୋପରେ ହଜାର ହଜାର ମାଇଲ ଦୂରଯାଏ ପ୍ରଚଣ୍ଡ ଗରମ ପବନ ବହିବାରେ ଲାଗିବ । ଗ୍ରୀଷ୍ମ ଋତୁର ମଧ୍ୟାହ୍ନ ସୂର୍ଯ୍ୟ ତାପଠାରୁ ପ୍ରାୟ ୬୦୦ ଗୁଣରୁ ଅଧିକ ଉତ୍ତାପ ଏହି ଅଞ୍ଚଳରେ ସୃଷ୍ଟି ହେବ । ବିସ୍ଫୋରଣ ହେବାର କେତେ ସେକେଣ୍ଡ ପରେ ବାୟୁମଣ୍ଡଳରେ ବାୟୁ ଗୃହରେ ଦ୍ରୁତ ପରିବର୍ତ୍ତନ ଘଟି-ବାରେ ଲାଗିବ ଏବଂ ଉତପ୍ତ ବାୟୁ ପ୍ରବାହିତ ହୋଇ ସବୁ କୋଠାଘର ଭାଙ୍ଗିଯାଇ ଧୂଳିସାଥ ହୋଇଯିବ । ଏହି ସମୟରେ ହଜାର ହଜାର ଆଣବିକ ଜ୍ୱଳନ୍ତ ଅଗ୍ନିପିଣ୍ଡୁଳା ଭୂଇଁରେ ଖୁବ୍ ଜୋରରେ ମାଡ଼ ହେବ ଏବଂ ଏଥିରୁ ଇଲେକ୍ଟ୍ରିକ ମ୍ୟାଗ୍ନେଟିକ ପ୍ଲସ ରେଡ଼ିଓ ଆକ୍ଟିଭ ରଶ୍ମି ବାହାରି ସେ ଅଞ୍ଚଳର ସମଗ୍ର ବିଦ୍ୟୁତ୍ ବ୍ୟବସ୍ଥାକୁ ଅଚଳ ଏବଂ ଛାରଖାର କରିଦେବ ।

ବୋମା ପଡ଼ିବାର ଏକ କଲୋମିଟର ବ୍ୟାସ ମଧ୍ୟରେ ଉତ୍ତାପ ୧୦ ଲକ୍ଷ ଡିଗ୍ରୀ ହୋଇଯିବ ଏବଂ ଉତପ୍ତ ଅଗ୍ନି ପିଣ୍ଡୁଳା ସୂର୍ଯ୍ୟର ପ୍ରଖର ତାପ ପରି ମାଡ଼ିଆସି ପ୍ରଳୟ ସୃଷ୍ଟି କରିବ । ଏହି ଅଞ୍ଚଳର ସମସ୍ତ ଲୋକ, ସଜୀବ ପଦାର୍ଥ, ଗଛ ଲତା ବାଷ୍ପୀକରଣ ହୋଇ ଜଳିପୋଡ଼ି କୁଆଡ଼େ ପାଉଁଶ ହୋଇଯିବେ ।

ବିସ୍ଫୋରଣ ସ୍ଥଳର ଦୁଇରୁ ତିନି କଲୋମିଟର ମଧ୍ୟବର୍ତ୍ତୀ ଅଞ୍ଚଳର ଲୁହା, ପଥର, କାଚ ଓ ରାସ୍ତାର କଂକ୍ରିଟ ପ୍ରଭୃତି ତରଳି ପାଣିପରି ବୋହିଯିବ । ଉତପ୍ତ ବାୟୁ ସମସ୍ତଙ୍କୁ ସିଝାଇ ପୋଡ଼ି ପକାଇବ । ବିସ୍ଫୋ-ରଣ ସ୍ଥଳଠାରୁ ୭/୭ କଲୋମିଟର ଅଞ୍ଚଳରେ କାଠ, ପ୍ଲାଷ୍ଟିକ ଓ ଲୁଗାପଟା ଆପଣା ଛୁଏଁ ଛୁଏଁ ଜଳିବାରେ ଲାଗିବ । ଏପରିକି ଲୁଗାପଟା ପିନ୍ଧି ଠିଆ ହୋଇଥିବା ଲୋକମାନଙ୍କର ପୋଷାକ ପତ୍ର ଆପଣାଛୁଏଁ ଜଳିଉଠିବ । ଲୋକେ ଜୀଅନ୍ତା ପୋଡ଼ି ହୋଇ ମରିବେ । ୧୧ କଲୋ-

ମିଟର ଦୂରରେ ଥିବା ଲୋକମାନଙ୍କ ଦେହରେ ସଙ୍ଗେ ସଙ୍ଗେ ଗଭୀର ଫୋଟକା ଓ କ୍ଷତ ସୃଷ୍ଟି ହେବ, ଯାହାକ ଆଦୌ ଭଲ ହେବ ନାହିଁ ଏବଂ ଏହି ଅଞ୍ଚଳର ପ୍ରାୟ ୯୫ ଭାଗ ଲୋକ କାଳାନ୍ତକ କଷ୍ଟ ଭୋଗୀ ଶେଷରେ ମୃତ୍ୟୁ ବରଣ କରିବେ ।

୧୭ରୁ ୨୦ କିଲୋମିଟର ଦୂରରେ ଥିବା ଲୋକେ ମଧ୍ୟ ଫୋଟକା ଓ ପୋଡ଼ିଯିବା ରୋଗରେ ପୀଡ଼ିତ ହେବେ । ୧୦ କିଲୋମିଟର ଭିତରେ ଥିବା ସବୁ ଘର ଭାଙ୍ଗି ଚୁରମାର ହୋଇ ଧୂଳିସାତ ହୋଇ ଯିବ । ୨୫ କିଲୋମିଟର ଅନ୍ତର୍ଗତ ସମସ୍ତ ଘର ଭାଙ୍ଗି ଫାଟିଯିବ । ଟେଲିଫୋନ ତାର, ବିଦ୍ୟୁତ୍ ସଂଯୋଗର ସମସ୍ତ ବ୍ୟବସ୍ଥା ନଷ୍ଟ ହୋଇ ଏକ ବିରାଟ ଶ୍ମଶାନ ସୃଷ୍ଟି ହେବ ।

ବୋମା ପଡ଼ିବାର ୧୦ କିଲୋମିଟର ଅଞ୍ଚଳର ସମସ୍ତ ଲୋକ ମରିବେ । ୨୫ କିଲୋମିଟର ଅଞ୍ଚଳର ଲୋକେ ଊଣା ଅଧିକେ ବିକଳାଙ୍ଗ ତଥା ଅକର୍ମଣ୍ୟ ହୋଇ ନାମକୁ ମାତ୍ର ବଞ୍ଚି ରହିବେ । ବିସ୍ଫୋରଣ ପରେ ଏକ ବିରାଟ ଅଞ୍ଚଳର ମାଟି ଆକାଶକୁ ଉଠିଯିବ ଏବଂ ଆକାଶରେ ଏକ ଘନ କଳା ରେଡ଼ିଓ ଆକ୍ଟିଭ ବାଦଲ ସୃଷ୍ଟି କରିବ । ଏହି ବାଦଲ-ରେ ଗ୍ରାଫାଇଟ ଅଙ୍ଗାର ଧୂଆଁ ରହିବ । ଏହା ଆକାଶରେ ୨ ମାସରୁ ଏକ ଶହ ମାସ ଯାଏ ରହି ସୂର୍ଯ୍ୟ ରଶ୍ମିକୁ ଆସିବାକୁ ଦେବନାହିଁ ଓ ବୋମା ବିସ୍ଫୋରଣ ଅଞ୍ଚଳରେ ଏକ ଆଣବିକ ଶୀତଋତୁ ସୃଷ୍ଟି କରିବ— ଯାହାର ବ୍ୟାସ ପ୍ରାୟ ୫୦ କିଲୋମିଟର ଓ ଘନତା ୧ରୁ ୮ କିଲୋମିଟର ହେବ ।

ଏହି ରେଡ଼ିଓ ଆକ୍ଟିଭ ମାଟି ବହୁ ଦୂରର ନଦୀ, ନାଳ ଓ ଉର୍ବର ଅଞ୍ଚଳରେ ପଡ଼ି ଏହାକୁ ପ୍ରଦୂଷିତ କରିବ ଏବଂ ଏହିସବୁ ଅଞ୍ଚଳର ଲୋକମାନେ ତଥା ଜୀବଜନ୍ତୁ ଓ ଉଦ୍ଭିଦ ଏହି ପ୍ରଦୂଷିତ ଜଳ ପାନକରି ତଥା ପ୍ରଦୂଷିତ ମାଟିରେ ଫଳିଥିବା ପନିପରିବା ଖାଇ ଆଣବିକ ପ୍ରଦୂ-ଷଣର ଶୀକାର ହେବେ ଏବଂ ପରିଣାମରେ ମୃତ୍ୟୁ ବରଣ କରିବେ । ଏଥିରେ ଆକ୍ରାନ୍ତ ହୋଇ ସଙ୍ଗେ ସଙ୍ଗେ ମରିଯିବା ଲୋକ ହିଁ ଭାଗ୍ୟବାନ

ବିନିଦ୍ରତ ହେବେ । ବଞ୍ଚିରହିବା ଲୋକେ ତିଳ ତିଳ କଷ୍ଟ ଭୋଗି ଶେଷରେ ମରିବେ ।

ଏକ ମେଗାଟନ ଆଣବିକ ବୋମାର କି ଶକ୍ତିଶାଳୀ ଓ ମାରାତ୍ମକ ଶକ୍ତି ଏହିଥିରୁ ହିଁ ଆମକୁ ଅନୁମାନ କରିବାକୁ ହେବ । ଏକ ମେଗାଟନ ଆଣବିକ ବୋମା ଯଦି ଏତେ ପ୍ରଳୟ ସୃଷ୍ଟି କରିପାରେ ତେବେ ପୃଥିବୀରେ ବର୍ତ୍ତମାନ ଗଚ୍ଛିତ ଥିବା ୫୦ ହଜାର ମେଗାଟନରୁ ଅଧିକା ଶକ୍ତିଶାଳୀ ପରମାଣୁ ବୋମା ଓ ଏହାଠାରୁ ଅଧିକ ଶକ୍ତିଶାଳୀ ହାଇ-ଡ୍ରୋଜେନ ବୋମାର ଶକ୍ତି କ'ଣ ଏହା ଚିନ୍ତା କରି ମାନବ ସମାଜକୁ ଏହି ଧ୍ୱଂସ ମୁଖରୁ ରକ୍ଷା କରିବାକୁ ଆମ ସମସ୍ତଙ୍କୁ ଆଗରୁ ସାବଧାନ ହେବାକୁ ପଡ଼ିବ ଏବଂ ସମଗ୍ର ମାନବ ସମାଜ ତଥା ଜୀବଜଗତକୁ ଏକ ବିସ୍ଫୋରଣାତ୍ମକ ଅନ୍ଧକାରମୟ ଭବିଷ୍ୟତ ଆଡ଼କୁ ଯେଉଁ କତିପୟ ରାଷ୍ଟ୍ର ବର୍ତ୍ତମାନ ଠେଲିଦେବାକୁ ଯାଉଛନ୍ତି ସେମାନଙ୍କ ବିରୋଧରେ ସାରା ବିଶ୍ୱବାସୀଙ୍କ ମଧ୍ୟରେ ଜନଜାଗରଣ ସୃଷ୍ଟି କରି ଆନ୍ଦୋଳନ କରିବାକୁ ପଡ଼ିବ । ହିରୋସୀମା ଓ ନାଗାସାକିରେ ନିକ୍ଷେପିତ କ୍ଷୁଦ୍ର ବୋମାଦ୍ୱୟ ମାତ୍ର ୧୨ ଦଶମିକ ୫ ଓ ୨୨ କିଲୋଟନ ଶକ୍ତି ବିଶିଷ୍ଟ ଥିଲା । ମାତ୍ର ଏତେ କ୍ଷୁଦ୍ର ବୋମା କେତେ ପ୍ରଳୟ ସୃଷ୍ଟି କରିପାରିଥିଲା ତାହା ଆମେ ଊଣା ଅଧିକେ ଜାଣିଛୁଁ । ମାତ୍ର ଏଠି ଆଧୁନିକ ବୋମାର ଶକ୍ତି ଆଉ କିଲୋଟନରେ ସୀମିତ ନରହି ମେଗାଟନ ଦ୍ୱାରା ଗଣନା କରାଯାଉଛି । ବର୍ତ୍ତମାନ ପୃଥିବୀର ଅବସ୍ଥା ଯାହା ହୋଇଛି ସେଥିରେ ଆମେ ବଞ୍ଚିବାକୁ ହେଲେ ଜନସଚେତନତା ଓ ପରମାଣୁ ବୋମା ବିରୋଧରେ ସଂଗ୍ରାମ କରିବାକୁ ହେବ । ନଚେତ ଆମର ଏହି ସୁନ୍ଦର ପୃଥିବୀ, ସବୁଜ ବନାନୀ ଓ ଶସ୍ୟକ୍ଷେତ୍ର, ପକ୍ଷୀର ସୁମଧୁର ସଙ୍ଗୀତ ଆଖି ପିଛୁଳାକେ ନିକଟ ଭବିଷ୍ୟତରେ ଶ୍ମଶାନରେ ଯେ ପରିଣତ ନ ହେବ ତାହା କିଏ କହିବ ?

ବର୍ତ୍ତମାନ ଯେପରି ସୃଷ୍ଟିର ପ୍ରଳୟ ଆମ ସମସ୍ତଙ୍କ ଅଜାଣତରେ ନିକଟରୁ ନିକଟତର ହେବାରେ ଲାଗିଛି । ଆମେ ହିଁ ସୃଷ୍ଟିର ବିନାଶର କାରଣ ହେବାକୁ ଯାଉଛୁ । ଆଜିର ସଭ୍ୟ ବିଜ୍ଞାନୀ ମାନବ ଏହି ସୁନ୍ଦର ପୃଥିବୀକୁ ଧ୍ୱଂସ କରିବାକୁ ଦୃଢ଼ ଶପଥ ନେଇ ଠିଆ ହୋଇଥିବା ପରି ମନେ ହୁଏ । ଏଥିରୁ କଣ ଆମେ ରକ୍ଷା ପାଇ ପାରିବା ନାହିଁ ?

●

# ଏକ ବିଂଶ ଶତାବ୍ଦୀର
# ଧ୍ୱଂସ ପ୍ରାପ୍ତ ପ୍ରାଣୀଙ୍କ ଉଦ୍ୟାନ

ଆମେ ପୃଥିବୀବାସୀ ନିକଟ ଭବିଷ୍ୟତରେ ବିଂଶ ଶତାବ୍ଦୀକୁ ବିଦାୟ ଦେଇ ଏକବିଂଶ ଶତାବ୍ଦୀକୁ ସ୍ୱାଗତ କରିବାକୁ ଯାଉଛୁ । ଧରି- ପୃଷ୍ଠରେ ବିଂଶ ଶତାବ୍ଦୀ କାଳ ମଧ୍ୟରେ ବିଜ୍ଞାନ କ୍ଷେତ୍ରରେ ମାନବସମାଜ ଉନ୍ନତିର ଚରମସୀମାରେ ପହଞ୍ଚି ପାରିଛି ଏବଂ ଏକବିଂଶ ଶତାବ୍ଦୀ ବେଳକୁ ଆହୁରି ଉନ୍ନତି ହେବ ବୋଲି କଳ୍ପନା କରାଯାଉଛି । ମାତ୍ର ଏକବିଂଶ ଶତାବ୍ଦୀର ପୃଥିବୀର ରୂପରେଖ କଣ ହେବ ସେ କଥା ସଭ୍ୟ ମାନବ ଜାତି କେବେ କଳ୍ପନା କରିଛି କି ? ଏକ ବିଂଶ ଶତାବ୍ଦୀର ପ୍ରଥମ ପାହାଚରେ ଆମେ ବହୁ ନୂଆ ନୂଆ ଘଟଣାମାନ ପୃଥିବୀ ପୃଷ୍ଠରେ ଦେଖିବାକୁ ପାଇବା । ଏକବିଂଶ ଶତାବ୍ଦୀର ମାନବ ନିଜେ କୌଣସି କାମ ନକରି ସବୁକିଛି ଯନ୍ତ୍ରମାନବ ତଥା ମନ୍ତ୍ରଦ୍ୱାରା କରିବ, ଚନ୍ଦ୍ର ପୃଷ୍ଠରେ, ସମୁଦ୍ର ଭିତରେ ବସତି ସ୍ଥାପନ ଠାରୁ ଆରମ୍ଭ କରି ବହୁ ଆଶ୍ଚର୍ଯ୍ୟଜନକ ଘଟଣାର ଚିତ୍ର ସେତେବେଳେ-ଦେଖିବାକୁ ମିଳିବ । ତା ସହିତ ଆମ୍ଭେମାନେ ମଧ୍ୟ ଦେଖିବାକୁ ପାଇବା ଜୀବଜନ୍ତୁ ଶୂନ୍ୟ ପୃଥିବୀର ଚିତ୍ର । ପୃଥିବୀ ପୃଷ୍ଠରେ ବର୍ତ୍ତମାନ ପରି ସେତେବେଳେ ପ୍ରାଣୀ, ଜୀବଜନ୍ତୁ ବେଶୀ ନଥିବେ । ଅଧିକାଂଶ ଧ୍ୱଂସ ମୁଖରେ ପଡ଼ିଥିବେ । ଯାହା କିଛି ବଞ୍ଚି ରହିଥିବେ ସେମାନଙ୍କୁ ନିଆଯାଇ ଏକ-ଧ୍ୱଂସ ପ୍ରାଣୀଙ୍କ ଉଦ୍ୟାନ ମଧ୍ୟରେ ରଖାଯାଇଥିବ । ଏହି ଉଦ୍ୟାନ କାର୍ଯ୍ୟ ଆଜିଠାରୁ ବିଭିନ୍ନ ଦେଶରେ ଆରମ୍ଭ ହୋଇଗଲାଣି । ଭବିଷ୍ୟତର ବଂଶଧର ପୃଥିବୀକୁ ଏତେ



ସରସ ସୁନ୍ଦର କରି ଗଢିଥିବା ପ୍ରାଣୀମାନଙ୍କୁ ଏହି ଉଦ୍ୟାନ ବା ଚିଡ଼ିଆ-ଖାନା ମାନଙ୍କରେ କେବଳ ଦେଖି ଆନନ୍ଦରେ ବିଭୋର ହେବେ ।

ଏବେ ଆମେ ପୃଥିବୀବାସୀ ପ୍ରାୟ ବିଳାସବ୍ୟସନ ମଧ୍ୟରେ ରହିଛୁ । ମଣିଷର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ମଣିଷ ପ୍ରକୃତି ଠାରୁ ଆରମ୍ଭ କରି ପ୍ରାଣୀମାନଙ୍କ ପର୍ଯ୍ୟନ୍ତ ଯେ କୌଣସି ପ୍ରକାର ଅନ୍ୟାୟ ବା ବ୍ୟଭିଚାର କରିବାକୁ ପଛାଉ ନାହିଁ । ଅଜ୍ଞାତର ଅନ୍ଧକାରାଚ୍ଛନ୍ନ ଗୁମ୍ଫା, ଜଙ୍ଗଲ ଘେରା ଶାନ୍ତ, ସରଳ, ଗ୍ରାମ୍ୟ ପରିବେଶ ଏବେ ନୂତନ ସଭ୍ୟ-ତାର ଆଗମନରେ ବଦଳିଗଲାଣି । ଜଙ୍ଗଲ ସଫା ହୋଇ ସବୁଆଡ଼ ପଦା ହୋଇଗଲାଣି । ଭାରତ ତଥା ଓଡ଼ିଶାର ଗ୍ରାମ୍ୟ ଜୀବଜନ୍ତୁ କ୍ରମେ କ୍ରମେ ଉଭେଇଗଲେଣି । ପ୍ରତି ମିନିଟରେ ସାଢ଼େ ୭ ଏକର ଜଙ୍ଗଲ ଭାରତରେ

ନଷ୍ଟ ହେଉଛି । ଗାଁ ଗହଳରେ ଯେଉଁ ଋଷିଥିବା କଅଁଳିବୁଢା ଏବେ ନାହାଁନ୍ତି । ଘଡ଼ିରକୁ ପହର ଗର୍ଜନରେ ଲୋକଙ୍କୁ ସମୟ ଜଣାଇବାକୁ ଗାଁରେ ଆଉ କଲୁଆ ଭୁକୁନାହାଁନ୍ତି । ଏମାନଙ୍କର ବଂଶ ଲୋପ ପାଇବାକୁ ବସିଲାଣି ।

ସକାଳ ହେଲେ ପୂର୍ବେ ଯେପରି ହଜାର ହଜାର କୁଆ, ବଗ, ଚଢେଇ ରାବ ରାବ ସକାଳ ହେବାର ସଙ୍କେତ ଦେବା ସଙ୍ଗେ ସଙ୍ଗେ ଲୋକଙ୍କୁ ନିଦରୁ ଉଠାଉଥିଲେ, ତାହା ମଧ୍ୟ କ୍ରମେ କମି କମି ଆସିଲାଣି ।

ସଭ୍ୟମାନବ ଏବେ ପ୍ରକୃତି ଉପରେ ନିର୍ଭର ନକରି ବିଜ୍ଞାନ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ହୋଇପଡ଼ିଲାଣି । ଘଣ୍ଟା, ରେଡ଼ିଓ, ମନୋରଞ୍ଜନ ସାମଗ୍ରୀ ଟେଲିଭିଜନ ଯେପରି ଅତ୍ୟାବଶ୍ୟକ ପଦାର୍ଥ ହୋଇଗଲାଣି । ଶୀତ ସକାଳରେ ଲମ୍ବା ଧାଡ଼ିବାନ୍ଧି ଶବ୍ଦକରି ଆକାଶରେ ଉଡ଼ିବୁଲୁଥିବା ସାଇବେରିଆନ ପକ୍ଷୀ ଆଜି ପ୍ରାୟ ଦେଖାଯାଉନାହାଁନ୍ତି । ଗାଁ ବିଲରେ ବୁଲୁଥିବା ଗେଣ୍ଡାଳିଆ ପକ୍ଷୀ ଆଜି ପ୍ରାୟ ଦୃଷ୍ଟିଗୋଚର ହେଉନାହାଁନ୍ତି । ସନ୍ଧ୍ୟାରେ ଭାଗବତ ଟୁଙ୍ଗୀରେ ଭାଗବତ ପଢ଼ା ବ୍ୟତୀତ ଏବେ ସିନେମା ସଙ୍ଗୀତ ଶୁଭୁଛି । ଏବେ କୌଣସି ପ୍ରକାର ଅସୁବିଧା-ଜନକ ପରିସ୍ଥିତିକୁ ବରଦାସ୍ତ କରିବାକୁ ଯେପରି ଆଧୁନିକ ମାନବ ପ୍ରସ୍ତୁତ ନୁହେଁ ।

ମାତ୍ର ଆମେ ସବୁକ୍ଷେତ୍ରରେ ଉନ୍ନତି ପଥରେ ଅଗ୍ରସର ହେବା ସଙ୍ଗେ ସଙ୍ଗେ ବର୍ତ୍ତମାନ ଗ୍ରାମ୍ୟ-ପରିବେଶରୁ ତଥା ଆମକୁ ବିଭିନ୍ନ କ୍ଷେତ୍ରରେ ସାହାଯ୍ୟ କରୁଥିବା ବହୁ ଉପକାରୀ, ଉପାଦେୟ ଜୀବଜନ୍ତୁ ଯେ କ୍ରମେ କାହିଁକି ଉଭେଇ ଯାଉଛନ୍ତି ବା ଧ୍ୱଂସ ପଥର ପଥିକ ହେଉଛନ୍ତି ସେ କଥା ଆମେ କେବେ ଭାବିଛୁ କି ? ଆମର ପୂର୍ବ-ପୁରୁଷଙ୍କ କୀର୍ତ୍ତି କୋଣାର୍କ, ପୁରୀ ମନ୍ଦିରକୁ ନେଇ ଆମେ ଓଡ଼ିଆମାନେ ଆଜି ନିଜକୁ ପରିଚୟ ଦେଇ ଗର୍ବ କରୁଛୁ । ମାତ୍ର ଏବେ ବିଜ୍ଞାନ ଯୁଗରେ ଉପନୀତ ହୋଇ ମଧ୍ୟ ଆମେ ସେପରି କୌଣସି କୀର୍ତ୍ତି ଆମ ଭବିଷ୍ୟତ ପୁରୁଷ-ମାନଙ୍କ ପାଇଁ ଛାଡ଼ିଯାଉଛୁ କି ? ଏବେ ଗ୍ରାମ୍ୟ ଜୀବନରେ ଶାନ୍ତ ପରିବେଶ ନାହିଁ, ଗାଁ ନଦୀରେ ପୂର୍ବପରି ମାଛ ନାହିଁ, ଜମିରେ ସାର ନଦେଲେ ପୂର୍ବପରି ଭଲ ଫସଲ ଫଳୁନାହିଁ, ପୂର୍ବପରି ପ୍ରଚୁର ପରିବା-ପତ୍ର ନାହିଁ । ସବୁ ଯେପରି ନାହିଁ ଅବସ୍ଥାକୁ ଆସିଗଲାଣି । ତେବେ

ଏହି "ନାହିଁ" ଯୁଗର ସୃଷ୍ଟି ପାଇଁ କିଏ ଦାୟୀ ସେ କଥା କିଏ କେବେ ଭାବିଛି କି ? ଆଜିର ଏହି ଅବସ୍ଥା ସୃଷ୍ଟି ପାଇଁ ଆମେ ମାନବସମାଜ ହିଁ ସମ୍ପୂର୍ଣ୍ଣ ରୂପେ ଦାୟୀ—ଏକଥା ଆଜି କେହି ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହଁନ୍ତି ।

ପୃଥିବୀ ପୃଷ୍ଠରେ ପ୍ରତ୍ୟେକ ଜୀବନ ତିଷ୍ଠି ରହିବାକୁ ହେଲେ ଏକ ନିର୍ଦ୍ଦିଷ୍ଟ ପାରିପାର୍ଶ୍ୱିକ ଅବସ୍ଥା ବା ପରିବେଶ ଆବଶ୍ୟକ କରିଥାଏ । ଆମେ ମଣିଷ ବଞ୍ଚି ରହିବାକୁ ଯେପରି ଉପଯୁକ୍ତ ପରିମାଣର ସୁଷମ ଖାଦ୍ୟ, ବସ୍ତ୍ର, ଜଳବାୟୁ, ପରିଷ୍କାର ପରିଚ୍ଛନ୍ନ ଗୃହ ଆବଶ୍ୟକ କରିଥାଉ, ସେହିପରି ପୃଥିବୀ ପୃଷ୍ଠର ପ୍ରତ୍ୟେକ କ୍ଷୁଦ୍ରରୁ ବୃହତ୍ତକାୟ ପ୍ରାଣୀ ମଧ୍ୟ ବଞ୍ଚି ରହିବାକୁ ନିର୍ଦ୍ଦିଷ୍ଟ ପରିବେଶ ଆବଶ୍ୟକ କରିଥାଆନ୍ତି । ପୃଥିବୀ ପୃଷ୍ଠର ପ୍ରତ୍ୟେକ ଦେଶରେ କେତେକ ସ୍ୱତନ୍ତ୍ର ଧରଣର ପ୍ରାଣୀ ଦେଖା-ଯାଇଥାଆନ୍ତି, ଯେଉଁମାନଙ୍କର ଆଚରଣ, ଚେହେରା ଭିନ୍ନ ଭିନ୍ନ ଏବଂ ଏମାନେ ପରୋକ୍ଷରେ ବା ପ୍ରତ୍ୟକ୍ଷରେ ମାନବର ଉପକାରୀ । ମାତ୍ର ସମଗ୍ର ପୃଥିବୀ ପୃଷ୍ଠରେ ଏବେ ଏହି ଉପକାରୀ ଜୀବଜନ୍ତୁ, ପକ୍ଷୀ, କୀଟପତଙ୍ଗଙ୍କ ସଂଖ୍ୟା କ୍ରମାଗତ ଭାବରେ କମିବାରେ ଲାଗିଥିବା ବେଳେ ଗୋଟିଏ ପ୍ରାଣୀଙ୍କ ସଂଖ୍ୟା ଅଳକୁଳ ନ ମାନି ବଢ଼ିବାରେ ଲାଗିଛି । ଏହି ପ୍ରାଣୀ ହେଉଛି ମଣିଷ ।

ଏହି ବିଂଶ ଶତାବ୍ଦୀ ଆରମ୍ଭରେ ପୃଥିବୀର ଜନସଂଖ୍ୟା ଯାହା ଥିଲା ଏବେ ତାହାର ୪ ଗୁଣ ଅଧିକ ହେଲାଣି । କ୍ରମବର୍ଦ୍ଧିଷ୍ଣୁ ଲୋକ ସଂଖ୍ୟାକୁ ଖାଦ୍ୟ, ବସ୍ତ୍ର ଯୋଗାଇବାକୁ ବାଧ୍ୟ ହୋଇ ମଣିଷ ପ୍ରକୃତି ତଥା ଜୀବଜନ୍ତୁଙ୍କ ଉପରେ ଅତ୍ୟାଚାର କରୁଛି । ବହୁ ପଶୁପକ୍ଷୀଙ୍କୁ ନିର୍ବିକାର ଭାବରେ ମାରି ଖାଉଛି । ପ୍ରାକୃତିକ ପରିବେଶକୁ ବେଖାତିର କରି ଜଙ୍ଗଲ କାଟି ସଫା କରି ନିଜର ଗୃହ ତିଆରି କରୁଛି । କ୍ରମାଗତ ଜଙ୍ଗଲ ଲୋପ ଫଳରେ ପରିବର୍ତ୍ତିତ ପରିସ୍ଥିତିରେ ନିଜକୁ ଖାପ ଖୁଆଇ ନପାରି ବହୁ ମୂଲ୍ୟବାନ ଜୀବଜନ୍ତୁ ଏବେ ପୃଥିବୀ ପୃଷ୍ଠରୁ ଉଭେଇ ଗଲେଣି । ପରିବେଶର ବିଲୋପ ଫଳରେ ପୃଥିବୀର ବାୟୁମଣ୍ଡଳ ମଧ୍ୟ କ୍ରମେ ଦୂଷିତ ହେଲାଣି । ବର୍ତ୍ତମାନ ପୃଥିବୀ ପୃଷ୍ଠର ଜଳ, ବାୟୁ, ମାଟି ସବୁ ଯେପରି ପ୍ରଦୂଷିତ ଅବସ୍ଥାକୁ ଆସିଗଲାଣି । ଜଙ୍ଗଲ ଧ୍ୱଂସ ଯୋଗୁ ବନ୍ୟା ଓ ମରୁଡ଼ି ତଥା ବାତ୍ୟା ବର୍ଷାବର୍ଷିକା ପୃଥିବୀ ପୃଷ୍ଠରେ କ୍ରମାଗତ

ଲାଗି ରହିଛି । ନିକଟ ଭବିଷ୍ୟତରେ ଆମକୁ ହିଁ ଏହାର ଫଳ ଭୋଗ କରିବାକୁ ପଡ଼ିବ ।

ଏବେ ଆମ ରାଜ୍ୟର ଚିଲିକା ହ୍ରଦ ଯେଉଁ ହାରରେ ପୋତି ହେବାରେ ଲାଗିଛି ଆଜି ପ୍ରାୟ ଏକଶହ ବର୍ଷ ଭିତରେ ଏହା ସମ୍ପୂର୍ଣ୍ଣ ଧାନ ଜମିରେ ପରିଣତ ହୋଇଯିବ । ଗାଁ ଗହଳର ଚାଷୀ ଏବେ ଅଧିକ ଅମଳକ୍ଷମ ଧାନ ଓ ପନିପରିବା ଉତ୍ପାଦନ କରିବାକୁ ସାର ଓ ପୋକମରା ଔଷଧ ଅତ୍ୟଧିକ ବ୍ୟବହାର କରିବା ଫଳରେ ଆମର ଅତି ଉପକାରୀ ପ୍ରାଣୀ ବେଙ୍ଗ, ଜିଆ ତଥା ବହୁ ଉପକାରୀ କୀଟ ପତଙ୍ଗଙ୍କର ବଂଶ ନାଶ ଅବସ୍ଥାକୁ ଆସିଲାଣି । ବେଙ୍ଗ ବଂଶ ନାଶ ଯୋଗୁ ମଶାଙ୍କ ପ୍ରାଦୁର୍ଭାବ ବଢ଼ିବାରେ ଲାଗିଛି ଏବଂ ମସ୍ତିଷ୍କ ଜ୍ୱର ଠାରୁ ଆରମ୍ଭ କରି ବହୁ ମାରାତ୍ମକ ରୋଗ କ୍ରମେ ବଢ଼ିବାରେ ଲାଗିଛି । ଗୋଟିଏ ବେଙ୍ଗ ତାର ନିଜର ଦେହର ଓଜନ ସହିତ ସମାନ ଓଜନର ମଶା, ପୋକ ଜୋକଙ୍କୁ ଖାଇ ପ୍ରକୃତିର ଭାରସାମ୍ୟ ରକ୍ଷା କରିଥାଏ । କେବଳ ବେଙ୍ଗ ନୁହେଁ— ଶଙ୍ଖଚିଲ, ଗେଣ୍ଡାଳିଆ, ବାଜପକ୍ଷୀ, ବାଘ, ଚିତାବାଘ, ଅହିରାଜ, କୋଚିଲାଖାଇ ଚଢ଼େଇ, ଭାଲୁଆ, କୁମ୍ଭୀର, ହରିଣ ପ୍ରଭୃତି ବହୁ ଜୀବ ଏବେ ଚିଡ଼ିଆଖାନା ମଧ୍ୟରେ ଆବଦ୍ଧ ହେବା ଅବସ୍ଥାରେ ଆସି ପହଁଞ୍ଚିଲେଣି । ଆଫ୍ରିକାର ଜୀବ ଆର୍ମାଡ଼ିଲୋ ଠାରୁ କୁଷ୍ଠରୋଗ ପ୍ରତିଷେଧକ ଔଷଧ ତିଆରି କରାଯାଇ ପାରୁଛି । ମାତ୍ର ଏହାର ବଂଶ ମଧ୍ୟ କ୍ରମେ ଲୋପ ପାଇବାକୁ ବସିଲାଣି ।

ଆମ ଦେଶରେ ଆଜଯାଏ ୩୫୦ ପ୍ରକାରର ସ୍ତନ୍ୟପାୟୀ ପ୍ରାଣୀ, ୧୨୦୦ ପ୍ରକାରର ପକ୍ଷୀ ଓ ୨୦୦୦ରୁ ଅଧିକ ପ୍ରକାରର ବହୁ ଉପକାରୀ କୀଟ ପତଙ୍ଗ ସମୂଳେ ଧ୍ୱଂସ ହୋଇଗଲେଣି । ମାତ୍ର ଏମାନଙ୍କ କଥା ଆମେ କେବେ ଭାବି ସେମାନଙ୍କର ବଂଶ ରକ୍ଷାର କୌଣସି ପ୍ରତିକାର କରିଛୁ କି ?

ଆମେରିକାରେ ଗତ ୭୫ ବର୍ଷ ପୂର୍ବେ ପ୍ରତିଷ୍ଠିତ ଜାତୀୟ ଅଡୁବନ ସୋସାଇଟି ତରଫରୁ ପୃଥିବୀ ପୃଷ୍ଠରେ କ୍ରମେ ବିନାଶ ପ୍ରାପ୍ତ ହେଉଥିବା ବହୁ ଉପକାରୀ ଜୀବଜନ୍ତୁଙ୍କ ବଂଶରକ୍ଷା ପାଇଁ ତଥା

ଏମାନଙ୍କର ରକ୍ଷଣାବେକ୍ଷଣ ପାଇଁ ଗବେଷଣା ତଥା ବିଭିନ୍ନ କାର୍ଯ୍ୟକ୍ରମମାନ ହାତକୁ ନିଆଯାଇଛି । ଆମେରିକାର ପ୍ରଖ୍ୟାତ ପରିବେଶ ବିଜ୍ଞାନୀ ତଥା ପକ୍ଷୀ ବିଶେଷଜ୍ଞ ଜନ୍ ଜେମସ୍ ଅଡୁବନଙ୍କ ନାମାନୁସାରେ ଏହି ସୋସାଇଟିର ନାମକରଣ କରାଯାଇଛି । ଜର୍ଜ ବାର୍ଡ ଗ୍ରିନେଲ ଅତୀତରେ ଆମେରିକାର ସ୍ତ୍ରୀଲୋକେ ନିଜର ପୋଷାକ ତିଆରି ପାଇଁ ତଥା କେତେକ ଖାଦ୍ୟପାଇଁ ଅତି ନିଷ୍ଠୁର ଭାବରେ ଲକ୍ଷ ଲକ୍ଷ ଜୀବଜନ୍ତୁ ତଥା ପକ୍ଷୀ ହତ୍ୟା କରୁଥିବାର ଦେଖି ମ୍ରିୟମାଣ ହୋଇ ସେମାନଙ୍କର ରକ୍ଷଣାବେକ୍ଷଣ ପାଇଁ ଏହି ପ୍ରକାର ଏକ ସଂସ୍ଥା ଗଠନ କରିଥିଲେ । ଏବେ ଆମେରିକାର ପ୍ରାକୃତିକ ପରିବେଶ ପୂର୍ଣ୍ଣ ୮୦ଟି ସ୍ଥାନର ୧୦୧,୦୦୦ ହେକ୍ଟର ସ୍ଥାନରେ ଅଭୟାରଣ୍ୟ ସୃଷ୍ଟି କରାଯାଇ ପୃଥିବୀ ପୃଷ୍ଠରୁ ଧ୍ୱଂସ ପାଇଯାଉଥିବା ପଶୁପକ୍ଷୀଙ୍କୁ ରଖାଯିବାର ବ୍ୟବସ୍ଥା କରାଯାଇଛି । ପଶୁପକ୍ଷୀମାନଙ୍କର ସ୍ୱାଧୀନତା ବିପନ୍ନ ହେଉଥିବାରୁ ଅଧିକାଂଶ କ୍ଷେତ୍ରରେ ଏହି ପ୍ରକାର ଅଭୟାରଣ୍ୟକୁ ଯିବାକୁ ସର୍ବସାଧାରଣଙ୍କୁ ଅନୁମତି ଦିଆଯାଉନାହିଁ ।

ଏହା ବ୍ୟତୀତ ଆମେରିକାର ବିଭିନ୍ନ ସ୍ଥାନରେ ଏହି ସୋସାଇଟି ତରଫରୁ ଅଭୟାରଣ୍ୟମାନ ନିର୍ମାଣ କାର୍ଯ୍ୟ ଚାଲିଛି । ସୋସାଇଟି ତରଫରୁ ବିଭିନ୍ନ ସ୍ଥାନରେ ଟ୍ରେନିଂ ବା ଶିକ୍ଷା ଶିବିର ସର୍ବସାଧାରଣଙ୍କ ପାଇଁ ଅନୁଷ୍ଠିତ ହୋଇ ପରିବେଶ ବିଲୋପ, ଧ୍ୱଂସ ପାଇଯାଉଥିବା ପଶୁ ପକ୍ଷୀଙ୍କୁ ରକ୍ଷା କରିବା ଇତ୍ୟାଦି ବିଷୟରେ ଲୋକମାନଙ୍କୁ ବୁଝାଯାଉଛି । ପୃଥିବୀର ବିଭିନ୍ନ ସ୍ଥାନର ସ୍କୁଲ କଲେଜର ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ପଶୁପକ୍ଷୀଙ୍କ ପ୍ରତି ସ୍ନେହ ମମତା ସୃଷ୍ଟି କରାଯିବାକୁ ବିଭିନ୍ନ ବକ୍ତୃତା, କାର୍ଯ୍ୟକ୍ରମମାନ ସୋସାଇଟି ତରଫରୁ ଆୟୋଜନ କରାଯାଉଛି । ୧୯୮୭ ମସିହାରେ ନିଜାମାବାଦ, ଠାରେ ସୋସାଇଟି ତରଫରୁ ଆନ୍ତର୍ଜାତିକ ଇକୋଲୋଜି ୱାର୍କସପ ଆୟୋଜନ କରାଯାଇ ଲୋକମାନଙ୍କୁ ଶିକ୍ଷା ଦିଆଯିବାର ବ୍ୟବସ୍ଥା ହୋଇଥିଲା । ଭବିଷ୍ୟତରେ ଆଫ୍ରିକାର କେନିଆ, କୋଷ୍ଟାରିକା, ବ୍ରାଜିଲ ପ୍ରଭୃତି ଦେଶରେ ଏହି ପ୍ରକାର ଶିକ୍ଷାପ୍ରଦ ଶିବିରମାନ ଅନୁଷ୍ଠିତ କରାଯାଇ ପଶୁପକ୍ଷୀ ତଥା ପରିବେଶକୁ ଧ୍ୱଂସମୁଖରୁ ରକ୍ଷା କରାଯିବାର କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ସୋସାଇଟି ତରଫରୁ ଧ୍ୱଂସ ପାଇ-

ଯାଉଥିବା ଜୀବମାନଙ୍କ ଉପରେ ଗବେଷଣା ମଧ୍ୟ କରାଯାଉଛି ଏବଂ ସେମାନଙ୍କର ରକ୍ଷଣାବେକ୍ଷଣ କରାଯାଉଛି ।

୧୯୪୧ ମସିହାରେ ଆମେରିକାର ଟେକ୍ସାସ୍ ଉପକୂଳରେ ଦେଖା ଦେଇଥିବା ଏକ ଅଦ୍ଭୁତ ବଗ ସଂଖ୍ୟା ସାରା ପୃଥିବୀରେ ସେତେବେଳେ ୧୫ଟି ଥିବାବେଳେ ଏହା ଉପରେ ସୋସାଇଟି ତରଫରୁ ଗବେଷଣା କରାଯାଇ ଏବେ ଏହି ବଗଙ୍କ ସଂଖ୍ୟା ୯୬କୁ ବୃଦ୍ଧି କରାଯାଇପାରିଛି । ଏହି ସଂସ୍ଥା ଆମେରିକା ଲୋକଙ୍କ ମଧ୍ୟରେ ଏକ ଅଭୂତପୂର୍ବ ଜାଗରଣ ସୃଷ୍ଟି କରିଛି ଏବଂ ଲୋକେ କ୍ରମେ ଜୀବଜନ୍ତୁଙ୍କ ପ୍ରତି ଆକୃଷ୍ଟ ହେଉଛନ୍ତି ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ଆମ ଦେଶରୁ ଏବେ ସୁଦ୍ଧା ବହୁ ଉପକାରୀ ଜୀବଜନ୍ତୁ, କୀଟପତଙ୍ଗ ସମୂଳେ ଧ୍ୱଂସ ହୋଇଯାଇଥିଲେ ମଧ୍ୟ ଆମ ଦେଶରେ ସେମାନଙ୍କର ବଂଶ ରକ୍ଷା ପାଇଁ କଣ କରାଯାଇଛି ? ଆମ ଦେଶର ଲୋକଙ୍କୁ ଏ ବିଷୟରେ ଭାବିବା ପାଇଁ ଯେପରି ସମୟ ନାହିଁ ଏହାହିଁ ଜଣାପଡୁଛି । ତେବେ କଣ କ୍ରମେ କ୍ରମେ ବନ୍ୟ ସମ୍ପଦ ସହିତ ଆମର ବହୁ ଉପକାରୀ ଜୀବଜନ୍ତୁଙ୍କୁ ଆମେ ଏପରି ହରାଇ ଚାଲିଥିବା ? ଏହି ପ୍ରକ୍ରିୟା ଯଦି ଚାଲୁ ରହେ ତେବେ ଭବିଷ୍ୟତରେ ମଣିଷକୁ ପୃଥିବୀ ପୃଷ୍ଠରେ ବଞ୍ଚାଇ ରଖିବ କିଏ ? ମଣିଷ ହିଁ କଣ ଖାଲି ମଣିଷଙ୍କୁ ଦେଖିବ ? ବର୍ତ୍ତମାନ ବି ସମୟ ଅଛି । ଆଜିଠାରୁ ଏ ବିଷୟରେ ଗଣଚେତନା ଓ ଜନଜାଗରଣ ସୃଷ୍ଟି ହେଉ ।



# ଶତାବ୍ଦୀର ବଭିଷିକାମୟୀ
# ଜଳଦୁର୍ଘଟଣା

ବିଂଶ ଶତାବ୍ଦୀ ମଧ୍ୟରେ ସାଗର ବକ୍ଷରେ ସଙ୍ଘଟିତ ହୋଇଥିବା କେତୋଟି ପ୍ରାକୃତିକ ଜଳଦୁର୍ଘଟଣା ମାନବସମାଜ ମନରେ କଳାଗ୍ରସ୍ତ ଟାଣି ଦେଇଛି । ଏହି ଦୁର୍ଘଟଣାରେ ପ୍ରକୃତି ଯେ କେତେ ଭୀଷଣ ଏବଂ ତା ଆଗରେ ଆମେ ନିଜକୁ ଅତି ବୁଦ୍ଧିମାନ, ବଳଶାଳୀ ବୋଲି ବାହା-ସ୍ଫୋଟ ମାରୁଥିବା ବିଂଶ ଶତାବ୍ଦୀର ମାନବ ଯେ କେତେ ନଗଣ୍ୟ ତାହା ସହଜରେ ଅନୁମେୟ ହୁଏ । ମଣିଷ ବିଜ୍ଞାନ ବଳରେ ଚନ୍ଦ୍ରକୁ ଜୟକରି ସବୁ ଅସାଧ୍ୟ କାମ ସାଧନ କରିବାକୁ ଚେଷ୍ଟା ଅବ୍ୟାହତ ରଖିଛି, ମାତ୍ର ଥରେ ବିଶ୍ୱବ୍ରହ୍ମାଣ୍ଡ ମଧ୍ୟରେ ଆମ ପୃଥିବୀର ସ୍ଥିତି ଏବଂ ସେଥିରେ ଆମର ସ୍ଥାନ ବିଷୟରେ ଚିନ୍ତାକଲେ ବିଜ୍ଞାନୀ ମାନବକୁ ହତାଶ ହେବାକୁ ପଡ଼ିଥାଏ । ଅନେକ ସମୟରେ ବିଜ୍ଞାନ ବଳରେ ବଳଶାଳୀ ହେଲେ ମଧ୍ୟ ମଣିଷ ପ୍ରକୃତି ବା ଏକ ଲୁକ୍କାୟିତ ଶକ୍ତିର ଅସ୍ତିତ୍ୱ ବିଷୟରେ ସଚେତନ ଥାଏ । ଏପରିକି ଚନ୍ଦ୍ର ପୃଷ୍ଠକୁ ମଣିଷ ଯିବା ପୂର୍ବରୁ ସମସ୍ତ ମହାକାଶଗୁଣୀ ଠିଆ ହୋଇ ପ୍ରାର୍ଥନା କରିଥିଲେ, "ହେ ଭଗବାନ, ଆମକୁ ରକ୍ଷାକର" । ଏଇଥିରୁ ମଣିଷ କୌଣସି ଏକ ବୃହତ ଶକ୍ତି ଉପରେ ନିର୍ଭର କରି ନିଜର ନ୍ୟୂନତା ପ୍ରକାଶ କରିଛି ।

ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ୧୨ ବର୍ଷ ଅତୀତ ହେବାପରେ ଆଟଲାଣ୍ଟିକ ମହାସାଗରରେ ସଙ୍ଘଟିତ ହୋଇଥିବା ବିଭିଷିକାମୟ ଯାତ୍ରୀବାହୀ ଜଳଜାହାଜ ଟାଇଟାନିକ ଦୁର୍ଘଟଣା ପରେ ଏବେ ବିଂଶ ଶତାବ୍ଦୀ ଶେଷ ହେବାକୁ ଠିକ୍ ଆଉ ୧୨ ବର୍ଷ ଥିବାବେଳେ ପ୍ରଶାନ୍ତ ମହାସାଗରରେ ଘଟିଥିବା ଡୋନାପାକ୍ ଯାତ୍ରୀବାହୀ ଜଳଜାହାଜ ଦୁର୍ଘ-ଟଣାର ଘଟଣାବଳୀ ମାନବସମାଜକୁ ଚକିତ କରିଦେଇଛି ଏବଂ ପ୍ରକୃତି

ନିକଟରେ ମଣିଷ ଯେ କେତେ କ୍ଷୁଦ୍ର ତାହା ପୁଣି ଥରେ ପ୍ରମାଣ କରିଛି ।

୧୯୧୨ ମସିହା ଅପ୍ରେଲ ମାସ ୧୬ ତାରିଖରେ ବିଶ୍ୱବାସୀଙ୍କୁ ଚକିତ କରି, "ଟାଇଟାନିକ ବୁଡ଼ିଗଲା, ୧୫୦୦ ଲୋକ ମୃତ"—ଏହି ଖବର ଯେତେବେଳେ ସାରା ବିଶ୍ୱର ସମ୍ବାଦପତ୍ରର ପୃଷ୍ଠାମଣ୍ଡନ କରିଥିଲା, ସେତେବେଳେ ଅଧିକାଂଶ ପୃଥିବୀବାସୀ ଏହି ଖବରକୁ ବିଶ୍ୱାସ କରିନଥିଲେ । କାରଣ ସାରା ବିଶ୍ୱରେ ଟାଇଟାନିକ ପରି ବିଳାସପୂର୍ଣ୍ଣ ବିରାଟ ଜାହାଜ ଯେ ତାର ପ୍ରଥମ ଜଳଯାତ୍ରାରେ ଏପରି ଦୁର୍ଘଟଣାର ସମ୍ମୁଖୀନ



ହୋଇ ଦେଢ଼ହଜାର ଯାତ୍ରୀଙ୍କୁ ନେଇ ସମୁଦ୍ରଗର୍ଭକୁ ଚାଲିଯିବ, ଏହା କଳ୍ପନା ବାହାରେ ଥିଲା ।

ମାତ୍ର ଅବିଶ୍ୱାସ ଘଟଣା ବିଶ୍ୱାସପୂର୍ଣ୍ଣ ହେଲା । ଟାଇଟାନିକ ନିଜ ସହିତ ବହୁ ବିଳାସପ୍ରେମୀ ଧନୀ ବ୍ୟକ୍ତିଙ୍କୁ ଧରି, ନିଜ ବକ୍ଷରେ ବହୁ ଧନ, ରତ୍ନ, ହୀରା, ନୀଳା ନେଇ ସମୁଦ୍ରର କେଉଁ ଅତଳ ଗର୍ଭରେ ଲୀନ

ହୋଇଗଲା । ଏହି ଜାହାଜ ନିର୍ମିତ ହେବା ପରେ ପ୍ରଥମ ଥର ପାଇଁ ଯାତ୍ରା କରୁଥିଲା ଏବଂ ସେତେବେଳେ ବିଶ୍ୱର ସବୁଠାରୁ ବିଳାସପୂର୍ଣ୍ଣ ଏବଂ ବଡ଼ ଯାତ୍ରୀବାହି ଜାହାଜ ଥିଲା । ତେଣୁ ପ୍ରଥମ ଯାତ୍ରାରେ ବହୁ ଧନୀ ବ୍ୟବସାୟୀ ବ୍ୟକ୍ତି ଆମେରିକା ଅଭିମୁଖେ ଯାଉଥିଲେ ଏବଂ ସାଙ୍ଗରେ ବହୁ ଧନ ରତ୍ନ ନେଇଥିଲେ । ଜାହାଜ ମଧ୍ୟରେ ବିଳାସବ୍ୟସନ, ଆନନ୍ଦ ଉଲ୍ଲାସ ଲାଗି ରହିଥିଲା । ସମସ୍ତେ ଆନନ୍ଦ ଉଲ୍ଲାସ ମଧ୍ୟରେ ଯେତେବେଳେ ମତ୍ତ ଥିଲେ, ଅନ୍ଧକାର ରାତିର ବୁକୁଚିରି ଏକ ଗଗନ-ପ୍ରସାରି ଆଲୋକମାଳାପୂର୍ଣ୍ଣ ଏହି ଜାହାଜ ହଠାତ୍ ଏକ ବରଫ ପାହାଡ଼ ଦେହରେ ପିଟିହୋଇ, ଯାତ୍ରୀମାନଙ୍କର ସବୁ ଆକୁଳ କ୍ରନ୍ଦନକୁ ମାତ୍ର କେତେଘଣ୍ଟା ମଧ୍ୟରେ ସ୍ଥିର କରି, ପ୍ରାୟ ୧୫୦୦ ଯାତ୍ରୀଙ୍କ ଜୀବନ ଧରି ଆଟ୍‌ଲାଣ୍ଟିକ ମହାସାଗରର ୧୨,୫୦୦ ଫୁଟ ତଳକୁ ଚାଲିଗଲା ।

ଏହି ସମ୍ବାଦ ବ୍ୟାପିଯିବା ମାତ୍ରେ ବହୁ ଜାହାଜ ଯାତ୍ରୀମାନଙ୍କୁ ରକ୍ଷା କରିବାକୁ ଧାଇଁ ଆସିଥିଲେ । ମାତ୍ର ଦୁର୍ଘଟଣା ସ୍ଥଳ ସେତେବେଳେ ନୀରବ ନିଶ୍ଚଳ ଥିଲା । ଆଟ୍‌ଲାଣ୍ଟିକ ମହାସାଗରର ନୀଳ ଲହରୀମାନ ବରଫପାହାଡ଼ ଦେହରେ ଧକ୍କା ଖାଇ ସତେ ଯେପରି ଖେଳି ଚାଲିଥିଲା । ସତେ ଯେପରି ସେ କହିଚାଲିଥିଲା ସେଠାରେ କିଛି ଅଘଟଣ ଘଟିନାହିଁ ବୋଲି ।

ବହୁଦିନ ଧରି ସାରା ବିଶ୍ୱରେ ଟାଇଟାନିକ ଦୁର୍ଘଟଣା ବିଷୟରେ ଚର୍ଚ୍ଚା ହେଲା । ପ୍ରକୃତିର ଖିଆଲ ନିକଟରେ ମାନବ ଯେ କେତେ କ୍ଷୁଦ୍ର ଏହା ପ୍ରମାଣିତ ହୋଇଗଲା । କ୍ରମେ ଟାଇଟାନିକର ଦୁଃଖଦ ଐତିହ୍ୟ କେବଳ ଗଳ୍ପ, ସଙ୍ଗୀତ, ସିନେମା ମାଧ୍ୟମରେ ପ୍ରଚ୍ଛରିତ ହୋଇ ପୃଥିବୀବାସୀଙ୍କ ନିକଟରେ ବଞ୍ଚିରହିଲା ।

ସେହି ଦିନଠାରୁ ଆଶାୟୀ ମଣିଷ ଟାଇଟାନିକ ପରି, ବିଳାସପୂର୍ଣ୍ଣ ଜାହାଜରେ ଥିବା ଲୁପ୍ତ ଧନରତ୍ନ ଉଦ୍ଧାର କରିବାପାଇଁ ପ୍ରଗାଢ଼ ଚେଷ୍ଟା କରି ଆସିଛି ଏବଂ ଏଥିରେ ଗତବର୍ଷ ସଫଳ ହୋଇଛି । ଏତେ ଦିନଧରି

ଏ ବିଷୟରେ ଖୋଜଖବର ନପାଇବାର ଅନେକ କାରଣ ରହିଛି । ଟାଇଟାନିକ ବୁଡ଼ିଥିବା ଅଞ୍ଚଳରେ ସମୁଦ୍ରର ଗଭୀରତା ଖୁବ୍ ବେଶୀ ଏବଂ ସମୁଦ୍ର ସାଧାରଣତଃ ଅସ୍ଥିର । ଏହା ବ୍ୟତୀତ ଏହି ଜାହାଜ ବହୁ ବର୍ଷ ଧରି ବୁଡ଼ି ରହିଥିବାରୁ ଏହା ବକ୍ଷରେ ଓ ଉପରେ ମାଟି କାଦୁଅ ପୋତି ହୋଇପଡ଼ିବାର ସମ୍ଭାବନା ବହୁତ ବେଶୀ । ମାତ୍ର ଏହାସତ୍ତ୍ୱେ ନିଜର ଚେଷ୍ଟା, ଅଧ୍ୟବସାୟ ଜାରି ରଖି ୭୪ ବର୍ଷ ତଳେ ଏକ ଅଶାନ୍ତ ସମୁଦ୍ର ବକ୍ଷକୁ ଜଳଗ୍ରାସ ଦ୍ୱାରା ଭଙ୍ଗି ଦୁଇଖଣ୍ଡରେ ବିଭକ୍ତ ହୋଇ ଚାଲିଯାଇଥିବା ଟାଇଟାନିକ ପରି ବିଶ୍ୱବିଖ୍ୟାତ ଜାହାଜକୁ ଠାବ କରି-ଥିବା "ଉଡ଼ ହୋଲ ଓ ସୋନୋଗ୍ରାଫିକ ଇନଷ୍ଟିଚ୍ୟୁଟ"ର କର୍ମକର୍ତ୍ତାମାନେ ସଫଳ ହୋଇଛନ୍ତି । ଏହି ସଂସ୍ଥାର ମୁଖ୍ୟ ସମୁଦ୍ରବିଜ୍ଞାନବିତ୍ ୪୪ ବର୍ଷ ବୟସ୍କ ରବର୍ଟ ବାଲର୍ଡ଼ ଗତ ୧୯୮୭ ସେପ୍ଟେମ୍ବର ମାସରେ ଜାହାଜକୁ ଖୋଜିବା ପାଇଁ ସେମାନେ ଯେ କେତେ କଷ୍ଟ କରିଥିଲେ ତାହା ଓ୍ୱାସିଂ-ଟନଠାରେ ସାମ୍ବାଦିକ ସମ୍ମିଳନୀରେ ବର୍ଣ୍ଣନା କରିଥିଲେ । ତାଙ୍କର ଏହି ଦୀର୍ଘ ନୈରାଶ୍ୟପୂର୍ଣ୍ଣ ଅବିଶ୍ରାନ୍ତ ଜଳଯାତ୍ରାର ବିବରଣୀ ଦେବାକୁ ଯାଇ ସେ କହିଥିଲେ ଯେ, ସେମାନେ ଯେ ଏହି ମହାସମୁଦ୍ର ମଧ୍ୟରୁ ଟାଇଟାନିକର ଧ୍ୱଂସାବଶେଷ ଖୋଜି ପାଇବେ ତାହା ସମସ୍ତଙ୍କ ମନରୁ କ୍ରମେ ଲିଭିଯାଇ-ଥିଲା । କାରଣ ଏହି କାର୍ଯ୍ୟ ଏକ ବିରାଟ ମରୁଭୂମିରୁ ଗୋଟିଏ ନିର୍ଦ୍ଦିଷ୍ଟ ବାଲିକଣା ଖୋଜିବା ପରି ଥିଲା । ମାତ୍ର ସେମାନେ ହତୋତ୍ସାହ ନହୋଇ କାର୍ଯ୍ୟ କରି ଯିବାରୁ ଶେଷରେ ସୁଫଳ ସେମାନଙ୍କର ହସ୍ତଗତ ହେଲା ।

ଟାଇଟାନିକ ଯାତ୍ରୀବାହୀ ଜଳଜାହାଜ ଦୁର୍ଘଟଣା ପରେ ପୃଥିବୀ ପୃଷ୍ଠରେ ସାଗରମଧ୍ୟରେ ଏତେ ବଡ଼ କୌଣସି ଦୁର୍ଘଟଣା ଘଟିନାହିଁ କହିଲେ ଚଳେ । ମାତ୍ର ବିଂଶ ଶତାବ୍ଦୀର ଶେଷ ଭାଗରେ ଏବେ ଗତ ୧୯୮୭ ମସିହା ଡିସେମ୍ବର ୨୧ ତାରିଖରେ ଫିଲିପାଇନସ ନିକଟରେ ଏକ ଯାତ୍ରୀବାହୀ ଜାହାଜ ଓ ଏକ ତୈଳବାହୀ ଟ୍ୟାଙ୍କର ମଧ୍ୟରେ ଯେଉଁ ଦୁର୍ଘଟଣା ଘଟିଲା ତାହା ଟାଇଟାନିକ ଦୁର୍ଘଟଣା ଠାରୁ ଅଧିକ ଭୟାବହ ଓ ଲୋମହର୍ଷଣକାରୀ । ଏହି ଦୁର୍ଘଟଣାରେ ପ୍ରାୟ ୧୫୦୦ ଯାତ୍ରୀ ମୃତ୍ୟୁ

ବରଣ କଲେ ବୋଲି ସରକାରୀ ଭାବେ କୁହାଯାଉଥିଲେ ମଧ୍ୟ ବେସରକାରୀ ଭାବେ ପ୍ରାୟ ୩୦୦୦ ଯାତ୍ରୀଙ୍କର ମୃତ୍ୟୁ ଘଟିଥିବାର ଅନୁମାନ କରାଯାଏ ।

-

ସେଦିନ ଥିଲା ଡିସେମ୍ବର ମାସ ୨୧ ତାରିଖ । ସୂର୍ଯ୍ୟ କୁହୁଡ଼ି ଭେଦି ଶୀତସକାଳର ବୁଲୁଚରି ସାଗର ବକ୍ଷରେ ନିଜର ରଶ୍ମି ଖେଳାଇ ଆକାଶକୁ ଉଠିଥିଲା । ନିର୍ମଳ ଆକାଶ ଏବଂ ଶାନ୍ତ ସାଗରବେଳା । ଆଗରେ ଖ୍ରୀଷ୍ଟମାସ । ଖ୍ରୀଷ୍ଟମାସ ପାଳନ କରିବାକୁ ଆନନ୍ଦବିଭୋର, ଉଦ୍‌ବିଗ୍ନ, ବ୍ୟଗ୍ର ନରନାରୀ ସେଦିନ ଫିଲିପାଇନସ୍ ଦ୍ୱୀପ ଅଭିମୁଖେ ଛୁଟି କଟାଇବାକୁ ଆସିବାକୁ ପୂର୍ବାହ୍ଣରେ "ଡୋନାପାଜ୍" ନାମକ ବିରାଟ ଜାହାଜରେ ଚଢ଼ିଥିଲେ । ଖ୍ରୀଷ୍ଟମାସ ପାଳନ କରି ଛୁଟିକଟାଇବା ଓ ବନ୍ଧୁବାନ୍ଧବଙ୍କ ସହିତ ମିଶିବାକୁ ଶହ ଶହ ବୁଢ଼ାବୁଢ଼ୀ, ଯୁବକ ଯୁବତୀ, ଛୋଟ ପିଲା ସମସ୍ତେ ଯେପରି ଆନନ୍ଦରେ ବିଭୋର ଥିଲେ । ବିରାଟ ଜାହାଜ ସାରା ଆନନ୍ଦ ଉଲ୍ଲାସ ଲାଗିରହିଥିଲା । ଜାହାଜ କୂଳଛାଡ଼ି ଫିଲିପାଇନସ ଅଭିମୁଖେ ଯାତ୍ରାରମ୍ଭ କରିଥିଲା । ମାତ୍ର ଏହି ଆନନ୍ଦମତ୍ତ ନରନାରୀଙ୍କୁ ଯେ କାଳ କ୍ରମେ ନିଜ ଆଡ଼କୁ ଟାଣି ନେଉଥିଲା ତାହା କିଏ ସେତେବେଳେ କେହି ଜାଣିଥିଲା ? କ୍ରମେ ସୂର୍ଯ୍ୟଦେବତା ପଶ୍ଚିମାଭିମୁଖୀ ହେଲେ ଓ ଆକାଶରେ ରକ୍ତିମ ଆଭା ବିଚ୍ଛାଇ ବିଦାୟ ନେଲେ । ଯାତ୍ରୀମାନେ ଅତ୍ୟନ୍ତ କୌତୁହଳୀ ହୋଇଉଠୁଥିଲେ । କେତେକ ଡେକ ଉପରକୁ ଆସି ଆନନ୍ଦ ଉଲ୍ଲାସ ମଧ୍ୟରେ ନାଚୁଥିଲେ । ପୁଣି କେତେକ ଦୂର ଦିଗ୍‌ବଳୟ ଆଡ଼େ ନିକଟବର୍ତ୍ତୀ ଦ୍ୱୀପର ଆଲୋକମାଳା ଦେଖି ଉଲ୍ଲସିତ ହେଉଥିଲେ । ସମୁଦ୍ର ବକ୍ଷ ସଂପୂର୍ଣ୍ଣ ଶାନ୍ତ । ବିପଦର କୌଣସି କାରଣ ନାହିଁ । ମଧ୍ୟରାତି ସୁଦ୍ଧା ସେମାନେ ଫିଲିପାଇନସରେ ପହଁଞ୍ଚିବେ । କେତେ ବନ୍ଧୁ ପ୍ରିୟଜନ ସେମାନଙ୍କ ଅପେକ୍ଷାରେ ଥିବେ । ବହୁ ଦିନପରେ ସାକ୍ଷାତ । ତାପରେ ପୁଣି ଦୁଇଦିନ ପରେ ଖ୍ରୀଷ୍ଟମାସ । ଏସବୁ ଭାବି ଆନନ୍ଦଉଲ୍ଲାସ ମଧ୍ୟରେ ଜାହାଜର ସମସ୍ତ ଯାତ୍ରୀ ଯେପରି ଏକାବେଳକେ ଅଧୀର ହୋଇ ପଡ଼ୁଥିଲେ ।

ରାତି ୧୦ଟା ବାଜିବାର ସଙ୍କେତ ଜାହାଜରୁ ଆସିଲା । ଅନେକ ଯାତ୍ରୀ ଡେକ ଉପରେ ବୁଲୁଥିଲେ । କେତେକ ସିନେମା ଦେଖୁଥିଲେ ଆଉ କେତେକ ରେଷ୍ଟୋରାଁରେ ବସି ଆଳାପ ଆଲୋଚନାରେ ମଗ୍ନ ରହି ବିଭିନ୍ନ ଖାଦ୍ୟ ଖାଉଥିଲେ ।

ମାତ୍ର ହଠାତ୍ ଏ କଣ ହେଲା !!

ଏକ ପ୍ରଚଣ୍ଡ ଶବ୍ଦକରି ଜାହାଜଟି ହଠାତ୍ ଦୋହଲି ଉଠିଲା ଓ କିଏ କିଛି ଭାବିବା ପୂର୍ବରୁ ଏକ ବିରାଟ ବିସ୍ଫୋରଣ ଘଟି ଚାରିଆଡ଼େ ଅଗ୍ନି ବର୍ଷା ସହିତ ଜାହାଜଟି ଜଳିବାକୁ ଲାଗିଲା ଏବଂ କ୍ରମେ କ୍ରମେ ସମୁଦ୍ର ବକ୍ଷକୁ ଗତିକଲା । କଣ ଘଟିଲା ଭାବିବା ପୂର୍ବରୁ ସବୁ ଯେପରି ଓଲଟ ପାଲଟ ହୋଇଗଲା । ପୂର୍ବ କେତେ ମିନିଟରେ ସୁନେଲି ସ୍ୱପ୍ନ ମିଳେଇଯାଇ କ୍ରନ୍ଦନ, ଆର୍ତ୍ତଚିତ୍କାର ଓ ଜୀବନ ରକ୍ଷା ପାଇଁ ବିକଳ ପ୍ରଚେଷ୍ଟା ସାରା ଅଞ୍ଚଳରେ ଖେଳିଗଲା । ବିରାଟ ଅଗ୍ନିପିଣ୍ଡୁଳା ନିଜର ଜିହ୍ୱା ବିସ୍ତାର କରି ଚାରିଆଡ଼େ ଜଳୁଥିଲା । କ୍ରମେ ଯେ ଯେପରି ଯେଉଁ ଅବସ୍ଥାରେ ଥିଲେ, ସେହି ଅବସ୍ଥାରେ ଅଗ୍ନି ସେମାନଙ୍କୁ ନିଜ ଭିତରକୁ ନେଇଗଲା ।

କେତେକ ଯାତ୍ରୀ ଅଧାପୋଡ଼ା ହୋଇ ଜୀବନ ବଞ୍ଚାଇବାକୁ ସମୁଦ୍ରବକ୍ଷକୁ ଡେଇଁ ପଡ଼ୁଥିଲେ, ମାତ୍ର ସମୁଦ୍ର ବକ୍ଷରେ ମଧ୍ୟ ରକ୍ଷା ନାହିଁ । ଦୁର୍ଘଟଣାଗ୍ରସ୍ତ ଟ୍ୟାଙ୍କରରୁ ହଜାର ହଜାର ବ୍ୟାରେଲ ତେଲ ସେତେବେଳେ ଶହ ଶହ ମାଇଲ ସମୁଦ୍ର ଜଳ ଉପରେ ଅଜାଡ଼ି ହୋଇ-ପଡ଼ି ସମୁଦ୍ର ଜଳ ଉପରେ ଜଳୁଥିଲା । ଯିଏ ଡେଇଁପଡ଼ି ପହଁରିବାକୁ ଚେଷ୍ଟାକଲା ତାକୁ ମଧ୍ୟ ସତେ ଯେପରି ନିଆଁ ପଛରୁ ଗୋଡ଼ାଇ ଗୋଡ଼ାଇ ଧରି ନିଜ ବକ୍ଷକୁ ନେଇଗଲା ।

ଆକାଶବ୍ୟାପୀ ପ୍ରଚଣ୍ଡ ଅଗ୍ନିଶିଖା ସହିତ ଦୁଇଟି ଜାହାଜ ସମୁଦ୍ର ବକ୍ଷରେ ଅତି ଅସହାୟ ଭାବରେ ଜଳୁଥିବାର ଏବଂ ଆର୍ତ୍ତଚିତ୍କାର ଶୁଣି କେତେକ ନିକଟବର୍ତ୍ତୀ ଜାହାଜ ଘଟଣାସ୍ଥଳକୁ ତୁରନ୍ତ ଯାଇଥିଲେ ହେଁ ସେଠାରୁ ମାତ୍ର ଅଧାପୋଡ଼ା ୨୭ ଜଣ ହତଭାଗ୍ୟ ଯାତ୍ରୀଙ୍କୁ ଉଦ୍ଧାର

କରିବାରେ ସକ୍ଷମ ହୋଇଥିଲେ । "ଡୋନାପାଜ୍" ଜାହାଜରେ ପିଟି-ହୋଇ ଦୁର୍ଘଟଣା ଘଟାଇଥିବା "ଭକ୍ଟର" ନାମକ ତୈଳବାହୀ ଜାହାଜରେ ୮୮୦୦ ବ୍ୟାରେଲ ତୈଳ ଥିଲା । ଦୁର୍ଘଟଣା ପରେ ତୈଳ ବ୍ୟାରେଲ ଫାଟିଯାଇ ସେଥିରେ ବିସ୍ଫୋରଣ ଘଟି ସାରା ଅଞ୍ଚଳ ଯେପରି ଅଗ୍ନି-ପିଣ୍ଡୁଳାରେ ପରିଣତ ହୋଇଥିଲା । ଯେଉଁମାନେ ଜୀବନ ବଞ୍ଚାଇବାକୁ ସମୁଦ୍ର ବକ୍ଷକୁ ଡେଇଁଲେ, ସେମାନଙ୍କ ମଧ୍ୟରୁ ତ ଅନେକ ପୋଡ଼ିହୋଇ ମଲେ । ବାକୀ ଯେତିକ ହତଭାଗ୍ୟ ବଞ୍ଚିରହି ଭାସୁଥିଲେ ସେମାନଙ୍କୁ ସେ ଅଞ୍ଚଳରେ ସମୁଦ୍ର ମଧ୍ୟରେ ଥିବା ହଜାର ହଜାର ମାଂସଭୋଜୀ ସାର୍କ ମାଛ ଅତି ନିର୍ମମ ଭାବରେ ଖାଇଗଲେ । ପରଦିନ ସକାଳୁ ସେଠାକୁ ଉଦ୍ଧାର କରିବାକୁ ଯାଇଥିବା ଉଦ୍ଧାରକାରୀ ଦଳ ମାତ୍ର ୧୧ଟି କ୍ଷତବିକ୍ଷତ ଶବ ପାଇଥିଲେ । କିନ୍ତୁ ଜାହାଜର ଚିହ୍ନବର୍ତ୍ତି ମଧ୍ୟ ସେଠାରେ କିଛି ନଥିଲା । ସବୁ ଅତଳ ସମୁଦ୍ର ବକ୍ଷରେ ଲୀନ ହୋଇଯାଇଥିଲା । କେବଳ ପୋଡ଼ା ତେଲ ମିଶା ଜଳରାଶି ଲହଡ଼ି ଭାଙ୍ଗୁଥିଲା ।

ଏହି ମର୍ମନ୍ତୁଦ ଦୁର୍ଘଟଣାରୁ ଉଦ୍ଧାର ପାଇଥିବା ୪୨ ବର୍ଷ ବୟସ୍କ ଓସାବେଲ ନାମକ ଜଣେ ବ୍ୟକ୍ତି ଯେଉଁ କରୁଣ କାହାଣୀ ବର୍ଣ୍ଣନା କରିଛନ୍ତି, ତାହା ଯେପରି ଭୟପ୍ରଦ ସେପରି ଲୋମହର୍ଷଣକାରୀ । ଓସାବେଲ କହିଛନ୍ତି, ସେତେବେଳେ ଠିକ ରାତି ୧୦ଟା ବାଜିଥିଲା । ଜାହାଜରେ ଅତ୍ୟଧିକ ଯାତ୍ରୀ ଭର୍ତ୍ତିଥିବାରୁ ଗହଳ ଚହଳ ଲାଗିରହିଥିଲା । ଲୋକମାନେ ଆନନ୍ଦ ଉଲ୍ଲାସରେ ମତ୍ତ ଥାଆନ୍ତି । କେତେକ ଡେକ ଉପରେ ବୁଲି ଆନନ୍ଦରେ ଗୀତ ଗାଉଥାନ୍ତି । କୋଳାହଳରେ ଜାହାଜଟି କମ୍ପି ଉଠୁ-ଥାଏ । ମୁଖ୍ୟତଃ ଖ୍ରୀଷ୍ଟମାସ ପର୍ବ ମାତ୍ର ଦୁଇଦିନ ଥିବାରୁ କିଏ କିପରି ଏହି ପର୍ବକୁ ପାଳନ କରିବ ସେ ବିଷୟରେ ଅଧିକାଂଶ ସ୍ଥାନରେ ଚର୍ଚ୍ଚା ଚାଲିଥାଏ ।

ହଠାତ୍ ଏକ ବିରାଟ ଶବ୍ଦ ହେଲା ଏବଂ ଏକ ବିରାଟ ବିସ୍ଫୋରଣ ଘଟି ନିଆଁ ହୁଳା ସବୁ ଆକାଶକୁ ଉଠିଗଲା । ଆମର ଜାହାଜଟି ପ୍ରଚଣ୍ଡ ବେଗରେ ଦୋହଲି ଉଠି ଅଣେଇ ହୋଇପଡ଼ିଲା । ଆକାଶରୁ ନିର୍ଗତ

ନିଆଁ ହୁଲା ଆମ ଜାହାଜର ସବୁଆଡ଼େ ବିସ୍ତୃତ ହୋଇପଡ଼ିଲା । ସେତେବେଳେ ଆମ ଜାହାଜର ଗୋଟିଏ ମୁଣ୍ଡ ଜଳୁଥିଲା ଏବଂ ଜାହାଜଟି କ୍ରମେ ପାଣିରେ ବୁଡ଼ିବାକୁ ଯାଉଥିଲା । ତେଲ ସହ ନିଆଁ ପିଣ୍ଡୁଳା ସାରା ଜାହାଜରେ ବିଛେଇ ହୋଇପଡ଼ିବା ଦେଖି ଶହ ଶହ ନରନାରୀ ଆର୍ତ୍ତ ଚିତ୍କାର କରି ଉଠିଲେ । ସେ ଆଉ କିଛି ଭାବିନପାରି ଜୀବନ ବଞ୍ଚାଇବାକୁ ସମୁଦ୍ର ମଧ୍ୟକୁ ଡେଇଁ ପଡ଼ିଲେ । ସେ ତାଙ୍କ ଚାରିଆଡ଼େ ଶହ ଶହ ଯୁବକ ଯୁବତୀ, ନର ନାରୀ, ପିଲା, ବୃଦ୍ଧା ପହଁରି ପହଁରି ଆର୍ତ୍ତଚିତ୍କାର କରି ଜୀବନ ବଞ୍ଚାଇବାକୁ କଠିନ ସଂଗ୍ରାମ କରୁଥିବାର ଦେଖିଥିଲେ । ମାତ୍ର ପାଣି ଉପରେ ନିଆଁ ଖୁବ୍ ଶୀଘ୍ର ମାଡ଼ି ଆସୁଥିଲା ଏବଂ ପହଁରୁଥିବା ଲୋକଙ୍କୁ ଯେପରି ପଛରୁ ଗୋଡ଼ାଉଥିଲା । ନିଆଁ ସହିତ ଏହି ଦ୍ରୁତ ଦୌଡ଼ ପ୍ରତିଯୋଗିତାରେ ଯେଉଁମାନେ ଖୁବ ଶୀଘ୍ର ପହଁରି ପାରୁଥିଲେ ସେମାନେ ମଧ୍ୟ ରକ୍ଷା ପାଇପାରୁ ନଥିଲେ । ଲେଲିହାନ ଅଗ୍ନିଶିଖା ପାଣି ଉପରେ ଆଖିପିଛୁଳାକେ ମାଡ଼ିଯାଇ ସମସ୍ତଙ୍କୁ ନିଜ କୋଳକୁ ଟାଣି ନେଉଥିଲା ।

ହେଲେ ତାଙ୍କୁ ଭାବିବାକୁ ସମୟ ନଥିଲା । ତାଙ୍କ ଆଡ଼କୁ ମଧ୍ୟ ଲେଲିହାନ ଅଗ୍ନିଶିଖା ମାଡ଼ି ଆସୁଥିଲା । ସେ ମଧ୍ୟ ଅଗ୍ନି ବଳୟକୁ ଚାଲିଯିବା ଅବସ୍ଥାରେ ଥିଲେ । ଜୀବନ ବଞ୍ଚାଇବା ପାଇଁ ସେ ସେହି ଜଳନ୍ତା ତେଲ ତଳେ ଗଭୀର ସମୁଦ୍ରକୁ ଚାଲିଯାଇ ସମୁଦ୍ର ମଧ୍ୟରେ ଦୂରକୁ ଦୂରକୁ ପହଁରି ଚାଲିଥିଲେ । ପରେ ସେ ଡାକ୍ତରଖାନାରେ ନିଜକୁ ଆବିଷ୍କାର କରିଥିଲେ । ପ୍ରକୃତିର କି ଭୀଷଣ ନିଷ୍ଠୁରତା ତାହା ନ ଦେଖିଲେ ବର୍ଣ୍ଣନା କରି ହେବ ନାହିଁ ବୋଲି ଓସାବେଲ ପ୍ରକାଶ କରିଛନ୍ତି ।

ସେହି କାଳରାତ୍ରିର ବିଭୀଷିକା ଯେ କେତେ ଭୀଷଣ ଓ ମର୍ମନ୍ତୁଦ ତାହା ଓସାବେଲଙ୍କ ଅଭିଜ୍ଞତାରୁ କଳ୍ପିତ ଜଣାପଡ଼େ । ପରଦିନ ସକାଳେ ଆମେରିକା, ଫିଲିପାଇନସ୍‌ର ପ୍ରାୟ ୭ଟି ଜାହାଜ, ବିମାନ ଓ ହେଲିକପ୍ଟରର ଦୁର୍ଘଟଣା ସ୍ଥଳର ପ୍ରାୟ ୧୦୦ କି:ମି: ଅଞ୍ଚଳ ଖୋଜିଥିଲେ ମଧ୍ୟ

୧୧୨ଟି ଶବ ବ୍ୟତୀତ ଆଉ କିଛି ପାଇ ନଥିଲେ । ନୀଳ ସାଗର ଶାନ୍ତ ରହି ସତେ ଯେପରି ତା ବକ୍ଷରେ କିଛି ଅଘଟଣ ଘଟିନାହିଁ—ଏହା ପ୍ରମାଣ କରୁଥିଲା ।

ଏହି ଦୁର୍ଘଟଣା ଖବର ପୃଥିବୀବାସୀଙ୍କୁ ଚକିତ ଏବଂ ଭୟଭୀତ କରିଦେଇଥିଲା । ବିଂଶ ଶତାବ୍ଦୀର ପ୍ରାକ୍ କାଳରେ ଘଟିଥିବା ଟାଇଟାନିକ ଦୁର୍ଘଟଣା ପରେ ଏତେ ବଡ଼ ଜାହାଜ ଦୁର୍ଘଟଣା ଆଉ କେବେ ଘଟି ନ ଥିଲା । ଏହା ଜଳଦୁର୍ଘଟଣା କ୍ଷେତ୍ରରେ ଏକ ମର୍ମନ୍ତୁଦ ଅଧ୍ୟାୟ ସୃଷ୍ଟି କରି ପୃଥିବୀବାସୀଙ୍କ ମନରେ ପ୍ରକୃତିର କଠୋରତା, ଭୀଷଣତା, ନିଷ୍ଠୁରତା ବିଷୟରେ ଏକ ଚେତାବନୀ ଦେଇଗଲା । ପ୍ରକୃତିର ଭୀମରୂପ ଆଗରେ ମଣିଷ ଯେ କେତେ ଛାର, ନିଃସ୍ୱ ତାହା ପ୍ରମାଣିତ ହେଲା । ଏହା ସମ୍ଭବତଃ ବିଂଶ ଶତାବ୍ଦୀର ସବୁଠାରୁ ବଳୀ ଭୟପ୍ରଦ ସାଗର ଦୁର୍ଘଟଣା ।



# ଏ ଯୁଗର ସାଗର ମନ୍ଥନ

ସୁଦୂରପ୍ରସାରୀ ନୀଳସାଗର ରତ୍ନଗର୍ଭ ନାମରେ ପରିଚିତ । ଏହା ବହୁ ଧନରତ୍ନ, ଖାଦ୍ୟ ପଦାର୍ଥର ଭଣ୍ଡାର । ପୁରାଣରୁ ଆମେ ଜାଣୁ ଯେ ରାକ୍ଷସ ଓ ଦେବତାମାନେ ସାଗର ମନ୍ଥନ କରି ଅତି ଦୁର୍ଲଭ ଅମୃତ ଓ ବହୁ ଧନରତ୍ନ ତଥା ଲକ୍ଷ୍ମୀଙ୍କୁ ପାଇଥିଲେ । ସେହିଦିନଠାରୁ ସାଗର ଏକ ଧନରତ୍ନର ଭଣ୍ଡାର ରୂପେ ଆମ ସମସ୍ତଙ୍କ ଆଗରେ ପରିଚିତ । ଏବେ ପୃଥିବୀର ଜନସଂଖ୍ୟା ଯେପରି ଭାବରେ ବଢ଼ିବାରେ ଲାଗିଛି ଏବଂ ପରି-ପରିବେଶର ବିଲୋପ ଘଟି ଖାଦ୍ୟ ସମସ୍ୟା ତଥା ଜାଳେଣୀ ସମସ୍ୟାଠାରୁ ଆରମ୍ଭ କରି ବହୁ ସମସ୍ୟା ଯେପରି ଭାବରେ ପୃଥିବୀ ପୃଷ୍ଠରେ ଦେଖା ଦେଇ ମଣିଷ ମନରେ ଚିନ୍ତା ସୃଷ୍ଟି କରିଛି, ସେତେବେଳେ ରତ୍ନଗର୍ଭ ସାଗର ଆଡ଼େ ସମସ୍ତଙ୍କର ଲକ୍ଷ୍ୟ ଯାଇ ବର୍ତ୍ତମାନ ସ୍ଥିର ହୋଇଛି । ବହୁ ବର୍ଷ ଧରି ମଣିଷ ସାଗର ବକ୍ଷରୁ ବହୁ ଧନରତ୍ନ, ଖାଦ୍ୟ ଉତ୍ତୋଳନ କରି ଆସୁଛି, ମାତ୍ର ଏବେ କ୍ରମବର୍ଦ୍ଧିଷ୍ଣୁ ଲୋକସଂଖ୍ୟାକୁ ଖାଦ୍ୟ ଯୋଗାଇବାକୁ ମଣିଷ ବାଧ୍ୟ ହୋଇ ଅତ୍ୟଧିକ ସାଗର ମନ୍ଥନ କରି ଖାଦ୍ୟ, ଖଣିଜ ପଦାର୍ଥ, ତୈଳ ପ୍ରଭୃତି ବହୁ ପରିମାଣରେ ଏହା ଗର୍ଭରୁ ପାଇବାକୁ ଆକାଂକ୍ଷିତ ହୋଇପଡ଼ିଲାଣି । ଏବେ ସାଗରସମ୍ପଦର ଅତ୍ୟଧିକ ଓ ବେପରୱାୟ ଉତ୍ତୋଳନ ଯୋଗୁ ବହୁ ମାଛ ବଂଶ ଲୋପ ହେବା ଅବସ୍ଥାକୁ ଆସିଗଲାଣି । ମଣିଷ ସମୁଦ୍ର ଗର୍ଭରୁ ଏବେ ମନଇଚ୍ଛା ବେପରୱାୟ ଭାବରେ ମାଛ ଧରୁଛି, ଖଣିଜ ତୈଳ ଉତ୍ତୋଳନ କରୁଛି । ସମୁଦ୍ର ଉପରେ ଯେ କୌଣସି ପ୍ରକାର ଅତ୍ୟାଚାର କରିବାକୁ ପଛାଉ-ନାହିଁ । ଏପରିକି ବହୁ ଆଣବିକ ଓ ଅନ୍ୟାନ୍ୟ ମାରାତ୍ମକ ଅସ୍ତ୍ରଶସ୍ତ୍ରର ପରୀକ୍ଷା ସମୁଦ୍ର ବକ୍ଷରେ କରିବା ଦ୍ୱାରା ବହୁ ସମୁଦ୍ର ପ୍ରାଣୀଙ୍କର ଜୀବନ-ହାନି ଘଟୁଛି । ମାତ୍ର ବର୍ତ୍ତମାନ ପରି ଏପରି କ୍ରମାଗତ ମନଇଚ୍ଛା ସମୁଦ୍ର ସମ୍ପଦର ଖର୍ଚ୍ଚ କଲେ ଏହି ସମ୍ପଦ ଆଉ କେତେଦିନ ଯାଏ ତିଷ୍ଠି ରହିବ

ମଣିଷର ସେବାରେ ଲାଗିପାରିବ ତାହାହିଁ ବର୍ତ୍ତମାନ ମୁଖ୍ୟ ଚିନ୍ତାର ବିଷୟ ହେଲାଣି ।

ସାଗରର ମୁଖ୍ୟ ଅଂଶ ଜଳ ପୃଥିବୀ ପୃଷ୍ଠର ପ୍ରତ୍ୟେକ ଜୀବନର ମାଧ୍ୟମ, ସଭ୍ୟତାର ମୂଳପିଣ୍ଡ, ଆମ ପୃଥିବୀ ପୃଷ୍ଠରେ ଥିବା ସବୁ ଦରକାରୀ ମୂଲ୍ୟବାନ ପଦାର୍ଥ ମଧ୍ୟରେ ଅନ୍ୟତମ, ଜୀବନର ସୃଷ୍ଟିକାରୀ ଏବଂ ସର୍ବ ପରିଚିତ ।' ପୃଥିବୀର ନିକଟତମ ଗ୍ରହ ବୁଧ, ଶୁକ୍ର ଓ ମଙ୍ଗଳରେ ଜଳର ସ୍ଥିତି ବିଷୟ ଏବେ ବି ସନ୍ଦେହମୁକ୍ତ ନୁହେଁ । ଏହି ଗ୍ରହମାନଙ୍କରେ ପୂର୍ବେ ଜଳର ଅସ୍ତିତ୍ୱ ଥିବା ବୈଜ୍ଞାନିକମାନେ ମତ ଦିଅନ୍ତି, ମାତ୍ର ଏହି ଗ୍ରହମାନଙ୍କର ଦୁର୍ବଳ ମାଧ୍ୟାକର୍ଷଣ ଶକ୍ତି ଯୋଗୁ ଏହାର ପୃଷ୍ଠରେ ଜଳ ଓ ଅନ୍ୟାନ୍ୟ ବାଷ୍ପ ତିଷ୍ଠି ପାରୁନାହିଁ । ଆମ ପୃଥିବୀର ସୃଷ୍ଟିବେଳେ ଏହାର ପୃଷ୍ଠରେ ମଧ୍ୟ ଜଳ ନଥିଲା । ପୃଥିବୀ ସୃଷ୍ଟି ବେଳେ ଅନ୍ୟାନ୍ୟ ବାଷ୍ପ ସହିତ ଜଳୀୟ ବାଷ୍ପ ମଧ୍ୟ ବାଷ୍ପିକରଣ ହୋଇ ଶୂନ୍ୟକୁ ଚାଲିଯାଉଥିଲା ।

କ୍ରମେ ପୃଥିବୀ ପୃଷ୍ଠ ଶୀତଳ ହେଲା । ଆଗ୍ନେୟଗିରିରୁ ଅଗ୍ନି ଉଦ୍‌ଗୀରଣ ହୋଇ ଆକାଶରେ ବାଦଲର ସୃଷ୍ଟି ହେଲା । ବର୍ଷା ପୃଥିବୀର ବାୟୁମଣ୍ଡଳରେ ଦେଖାଦେଲା ଏବଂ ବର୍ଷା ହେବାଦ୍ୱାରା ପୃଥିବୀ ପୃଷ୍ଠର ନିମ୍ନଟିକାୟ ଖାଲ ଅଞ୍ଚଳ ଜଳପୂର୍ଣ୍ଣ ହୋଇ ସାଗରର ସୃଷ୍ଟି ହେଲା । ମାଟି ଏବଂ ପାହାଡ଼ ପର୍ବତ ଉପରେ ଦେଇ ଜଳସ୍ରୋତ ଗତି କରି ଯିବାରୁ ବଢ଼ିବା ପାଇଁ ଆବଶ୍ୟକୀୟ ପଦାର୍ଥ ନିଜ ସହିତ ଦ୍ରବୀଭୂତ କରି ସାଗର ମଧ୍ୟକୁ ମଧ୍ୟ ବୋହିନେଲା । ସାଗର ମଧ୍ୟରେ ହିଁ ଜଳରୁ ଜୀବନର ସୃଷ୍ଟି ହେଲା ।

ପ୍ରଥମ ଜୀବନର ସୃଷ୍ଟି ବିଷୟରେ ବହୁ ମତ ମଧ୍ୟରୁ ଆମେରିକାର "ନାସା" ଗବେଷଣା ସଂସ୍ଥାର ବୈଜ୍ଞାନିକମାନେ ମତ ଦିଅନ୍ତି ଯେ, ପ୍ରଥମ ଜୀବନ ସମୁଦ୍ର ଜଳରୁ ସୃଷ୍ଟି ନ ହୋଇ ସମୁଦ୍ର ଶଯ୍ୟାର କାଦୁଅ ପଙ୍କରୁ ହିଁ ପ୍ରଥମେ ସୃଷ୍ଟି ହୋଇଥିଲା । ପରୀକ୍ଷା କରି ଦେଖାଯାଇଛି ଯେ ଜୀବନର ସୃଷ୍ଟି ପାଇଁ ଦରକାର ହେଉଥିବା ଦୁଇଟି ଅତ୍ୟାବଶ୍ୟକ

ପଦାର୍ଥ ଧାରଣ କରିବାର ଶକ୍ତି ଜାଦୁଅ ଦେହରେ ହିଁ ରହିଛି । ଜାଦୁଅ ବା ପଙ୍କ ବାହାର ଶକ୍ତିକୁ ଗ୍ରହଣ କରି ରଖିପାରେ ଏବଂ ରଖିଥିବା ଶକ୍ତିକୁ ସ୍ଥାନାନ୍ତରିତ କରିପାରେ । ରେଡ଼ିଓଆକ୍ଟିଭ ପ୍ରକ୍ରିୟାରେ ବା ଅନ୍ୟାନ୍ୟ ସୂତ୍ରରୁ ମିଳୁଥିବା ଶକ୍ତିକୁ ଏହି ଜାଦୁଅ ପଙ୍କ ଗ୍ରହଣ କରି ନିଜେ ଏକ ରାସାୟନିକ କାରଖାନାର କାମ କରି ଏହି ନିର୍ଜୀବ କଞ୍ଚା-ମାଲକୁ ମୌଳିକ ବା ଯୌଗିକ ପଦାର୍ଥର କ୍ଷୁଦ୍ରତମ ଅଂଶରେ ପରିଣତ କରିଥାଏ ଏବଂ ଏହିଥିରୁ ହିଁ ଜୀବନର ସୃଷ୍ଟି ପ୍ରଥମେ ହୋଇଛି ବୋଲି ଅନୁମାନ କରାଯାଏ । ଜୀବନର ସୃଷ୍ଟି ପରେ ଆମ ପ୍ରାଣୀ ତଥା ଉଦ୍ଭିଦର ପ୍ରତ୍ୟେକ କୋଷର ମୁଖ୍ୟ ଅଂଶ ହିଁ ଜଳ । ତେଣୁ ଜଳ ହିଁ ଆମର ଜୀବନ । ପୃଥିବୀ ପୃଷ୍ଠର ତିନି ଭାଗ ଜଳ ହିଁ କୋଟି କୋଟି ସଜୀବ ପ୍ରାଣୀ ଓ ଉଦ୍ଭିଦଙ୍କର ଲୀଳାକ୍ଷେତ୍ର ।

ଆମ୍ଭେମାନେ ବୋଧହୁଏ ଜାଣି ନାହେଁ ଯେ ଭୂପୃଷ୍ଠରେ ବାସ କରୁଥିବା ସଜୀବପ୍ରାଣୀ ଓ ଉଦ୍ଭିଦଙ୍କଠାରୁ ଢ଼େର ଅଧିକ ପ୍ରାଣୀ ଓ ଉଦ୍ଭିଦ ସମୁଦ୍ର ମଧ୍ୟରେ ବାସ କରିଥାନ୍ତି । ସୁଦୂର ପ୍ରସାରି ନୀଳ ସାଗରର ଶୋଭା ଯେତିକି ମନୋରମ, ସେତିକି ସ୍ଥଳଭାଗରେ ବାସ କରୁଥିବା ପ୍ରାଣୀ ଓ ଉଦ୍ଭିଦଙ୍କର ଖାଦ୍ୟଭଣ୍ଡାର । ଅନାଦି କାଳରୁ ମଣିଷ ନିଜର ଖାଦ୍ୟ ପାଇଁ ସମୁଦ୍ର ଉପରେ ନିର୍ଭର କରି ଆସିଛି । ଖାଦ୍ୟ ବ୍ୟତୀତ ଏହା ବହୁ ମୂଲ୍ୟବାନ ଧାତୁ, ଶକ୍ତି, ଖଣିଜ ପଦାର୍ଥ ଓ ଖଣିଜ ତୈଳର ମଧ୍ୟ ଭଣ୍ଡାର ।

ପୂର୍ବକାଳରୁ ମଣିଷ ସମୁଦ୍ରର ଭୀଷଣ ରୂପ, ଭୀମକାନ୍ତ ଗର୍ଜନ ଶୁଣି ଭୟଭୀତ ଓ ସ୍ତବ୍ଧ ହୋଇଛି । ଏହାର ସୁଦୂରପ୍ରସାରି ନୀଳ ଜଳ-ରାଶିକୁ ଦେଖି ଏହାକୁ ଜାଣିବାର କେତେ ଆଶା କରିଛି । ଏହାକୁ ଜୟ-କରି ସମୁଦ୍ର ମନ୍ଥନ କରିବାକୁ ବାରମ୍ବାର ଚେଷ୍ଟାକରି ବିଜ୍ଞାନ ଯୁଗର ମଣିଷ ସେଥିରେ ଅନେକ ସମୟରେ କୃତକାର୍ଯ୍ୟ ମଧ୍ୟ ହୋଇଛି । ପୁରାଣରୁ ଦେବତା ଓ ଅସୁରମାନଙ୍କର କାଳ୍ପନିକ ସମୁଦ୍ରମନ୍ଥନ ଓ ହରି, ଲୀଳା ଲଭ ବିଷୟ ଆମେ ଊଣା ଅଧିକେ ଜାଣିଛୁ । ମାତ୍ର ଏବେକାର ମଣିଷ



ସମୁଦ୍ରମନ୍ଥନ କରି କ'ଣ ପାଇଛୁ ? କୌତୂହଳୀ ମାନବ ବହୁ ଥର ସମୁଦ୍ର ଗର୍ଭକୁ ଯାଇ ଏହା ଗର୍ଭରେ ଥିବା ସମ୍ପଦକୁ ଦେଖି ତାହାକୁ ଉତ୍ତୋଳନ କରିବାରେ ଫଳପ୍ରଦ ମଧ୍ୟ ହୋଇଛି ।

୧୭୭୩ ଖ୍ରୀଷ୍ଟାବ୍ଦରେ ଇଂରେଜ ବୈଜ୍ଞାନିକ କନଷ୍ଟାଇନ ଜନ ଫିପସ୍ "ରେସହର୍ସ" ନାମକ ଜାହାଜରେ ଆଇସଲାଣ୍ଡ ଓ ନରୱେ ମଧ୍ୟବର୍ତ୍ତୀ ସାଗରରେ ୪୦୯୮ ଫୁଟ ଗଭୀରତା ଯାଏ ମାପିଥିଲେ । ଏହା ସମସ୍ତ ସାଗରର ବୃହତ୍ତମ ଗଭୀରତା ବୋଲି ଏହା ପରେ ଦୀର୍ଘ ୩୫ ବର୍ଷ ଯାଏ ଗଣନା କରାଯାଉ ଥିଲା ।

୧୮୦୪ରେ ଫ୍ରାନ୍ସର ଫ୍ରାନ୍‌କୋଇସ ପେରନ ନାମକ ସମୁଦ୍ର ବିଜ୍ଞାନୀ ପୃଥିବୀ ପୃଷ୍ଠର ସମୁଦ୍ରର ବିଭିନ୍ନ ଅଞ୍ଚଳର ଗଭୀରତା ଓ ବିଭିନ୍ନ ସ୍ଥାନର ଜଳର ଉତ୍ତାପ ମାପିଥିଲେ । ଗଭୀରତମ ଅଞ୍ଚଳର ଜଳ କ୍ରମେ କ୍ରମେ ଉପରସ୍ତରର ଜଳଠାରୁ ଥଣ୍ଡା ହୋଇଥିବାରୁ ସମୁଦ୍ର ଶଯ୍ୟା ବରଫ ଦ୍ୱାରା ତିଆରି ଏବଂ ସେଠାରେ କୌଣସି ଜୀବନ୍ତ ବସ୍ତୁ ନାହାଁନ୍ତି ବୋଲି ସେ ମତ ଦେଇଥିଲେ ।

୧୮୧୮ ଖ୍ରୀଷ୍ଟାବ୍ଦରେ ଇଂରାଜୀ ବୈଜ୍ଞାନିକ ସାର ଜନ୍ ରସ ସମୁଦ୍ର ଶଯ୍ୟାରୁ କେତେକ ପଦାର୍ଥ ଉପରକୁ ଆଣି ପାରିଥିଲେ । ସେହି

ବର୍ଷ ଇଂରାଜୀ ବୈଜ୍ଞାନିକ ପଂରୁବେଶ ୧୩୮୦ ଫୁଟ ଗଭୀରତାରୁ ଷ୍ଟାର ଫିସ ଜାତୀୟ କେତେକ ମାଛଙ୍କୁ ଧରିପାରିଥିଲେ । ୧୮୫୦ ଖ୍ରୀଷ୍ଟାବ୍ଦରେ ବିଭିନ୍ନ ସ୍ଥାନରେ ସମୁଦ୍ରର ଗଭୀରତା ମାପି ଏହା ବିଷୟରେ କେତେକ ଇଂରେଜ ବୈଜ୍ଞାନିକ ଅଧିକ ଗବେଷଣା କରିଥିଲେ ।

୧୮୭୨ ଡିସେମ୍ବର ମାସ ୭ ତାରିଖରୁ ୧୮୭୬ ମେ ମାସଯାଏ ଚ୍ୟାଲେଞ୍ଜର ନାମକ ଜାହାଜରେ ସମୁଦ୍ର ପ୍ରଦକ୍ଷିଣ କରି ସମୁଦ୍ର ଉପରେ ଗବେଷଣା କରୁଥିବା ବୈଜ୍ଞାନିକ ସାର ଓ୍ୱାଭିଲ୍ ଥମସନ ଓ ସାର ଜର୍ଜ ନାରିସ ସମୁଦ୍ର ବିଷୟରେ ବହୁ ଅଜଣା ତଥ୍ୟ ଓ ନୂତନ ଜୀବନ୍ତ ସମୁଦ୍ର ପ୍ରାଣୀଙ୍କ ବିଷୟରେ ପୃଥିବୀବାସୀଙ୍କୁ ଜଣାଇଥିଲେ । ସେହି ସମୟରେ ଜର୍ମାନ ବୈଜ୍ଞାନିକମାନେ 'ଗେଜେଲ' ନାମକ ଜାହାଜରେ ଦକ୍ଷିଣ ଆଟ୍‌ଲାଣ୍ଟିକ, ଦକ୍ଷିଣ ପ୍ରଶାନ୍ତ ମହାସାଗର, ଭାରତ ମହାସାଗର ପ୍ରଭୃତିରେ ଗବେଷଣା ଚଳାଇ ସାଗର ବକ୍ଷର ବହୁ ପ୍ରାକୃତିକ, ଭୌଗଳିକ ଏବଂ ଜୀବନ୍ତ ଉଦ୍ଭିଦ ବିଷୟରେ ତଥ୍ୟ ପ୍ରଦାନ କରିଥିଲେ । ୧୯୦୨ ଖ୍ରୀଷ୍ଟାବ୍ଦରେ ଷ୍ଟକହୋମଠାରେ ସାଗର ଗର୍ଭ ଅନୁସନ୍ଧାନ ପାଇଁ ଏକ ଆନ୍ତର୍ଜାତିକ ସଂସ୍ଥା ଗଠିତ ହୋଇ ଏହାର ମୁଖ୍ୟ କାର୍ଯ୍ୟାଳୟ କୋପେନହେଗ ଠାରେ ପ୍ରତିଷ୍ଠିତ ହେଲା । ଇଉନିପରେ ବହୁ ଦେଶ ସମେତ ପର୍ତ୍ତୁଗାଲ, ସ୍ପେନ, ଇଟାଲୀ ଏହି ସଂସ୍ଥାର ସଭ୍ୟ ହେଲେ । ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା ପ୍ରଭୃତି ଦେଶ ମଧ୍ୟ ଏହି ସଂସ୍ଥାରେ ଯୋଗଦେଇ ସମୁଦ୍ର ଗବେଷଣାରେ ଭାଗନେଲେ ।

୧୯୬୦ ମସିହା ଜାନୁଆରୀ ୨୩ ତାରିଖରେ ସମୁଦ୍ରର ଗଭୀରତମ ଅଞ୍ଚଳକୁ ମଣିଷ ଓହ୍ଲାଇବାକୁ ଚେଷ୍ଟା କରି ଏକ ଜଳଗୋଲକ ସାହାଯ୍ୟରେ ଜ୍ୟାକ ପିକାର୍ଡ ଓ ଡୋନାଲର୍ଡ୍ ଓ୍ୱାଲ୍‌ସ ୩୫,୮୦୦ ଫୁଟ ସମୁଦ୍ର ମଧ୍ୟକୁ ଯାଇ ଏକ ଦୁଃସାହସିକ କାର୍ଯ୍ୟ କରି ପୃଥିବୀବାସୀଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲେ । ସେମାନେ ସମୁଦ୍ରର ଗଭୀରତମ ଅଞ୍ଚଳରେ ଥିବା ବହୁ ଜୀବଜନ୍ତୁ ଓ ମୂଲ୍ୟବାନ ପଦାର୍ଥକୁ ଆବିଷ୍କାର କରିଥିଲେ । ଏହାପରେ ବିଜ୍ଞାନ ଯୁଗର ମାନବ ନୀଳସାଗର ବକ୍ଷର ଧନରତ୍ନ

ଭଣ୍ଡାରରେ ଆକୃଷ୍ଟ ହୋଇ କ୍ରମାଗତ ଏହା ବିଷୟକୁ ମନ୍ଥନ କରିବାକୁ ଚେଷ୍ଟା କରି ବହୁ ନୂତନ ପଦାର୍ଥ ପାଇଛନ୍ତି । ପୂର୍ବେ ନୀଳସାଗରକୁ ଯେଉଁ ମାନବ ଏକ ଅଦରକାରୀ ପ୍ରାକୃତିକ ଲବଣ ଜଳଭଣ୍ଡାର ବୋଲି ଭାବୁଥିଲା, ଏବେ ପୃଥିବୀର ସ୍ଥଳଭାଗରେ ଦେଖା ଦେଇଥିବା ବିସ୍ଫୋରଣାତ୍ମକ ଜନସଂଖ୍ୟା ବୃଦ୍ଧି ଓ ଅନ୍ୟାନ୍ୟ ସମସ୍ୟାର ସମାଧାନ ଦିଗରେ ଏହି ରତ୍ନଗର୍ଭ ସାଗର ହିଁ ଜୀବଜଗତର ଏକ ଅତି ଦରକାରୀ ମୁଖ୍ୟ ଖାଦ୍ୟଭଣ୍ଡାର ବୋଲି ଜାଣି ପାରିଛି ।

ଏବେ ପୃଥିବୀର ଲୋକସଂଖ୍ୟା ୫୦୦ କୋଟି ହେଲାଣି । ଏହି ଶତାବ୍ଦୀର ଶେଷକୁ ଅର୍ଥାତ୍ ଆଉ ୧୨ ବର୍ଷ ପରେ ଲୋକସଂଖ୍ୟା ୬୫୦ କୋଟି ପାଖାପାଖି ହେବ । ପୃଥିବୀର ଏହି ବିରାଟ ଜନସଂଖ୍ୟାକୁ ଭବିଷ୍ୟତରେ ଖାଦ୍ୟ ଯୋଗାଇବ କିଏ ? ଆମ ପୃଥିବୀ ପୃଷ୍ଠର ଜମିଭୂମି ପରିମାଣ ତ ଆଉ ବିଶେଷ ବଢ଼ିବାର ନାହିଁ । ପରିବେଶ ଲୋପ ଓ କ୍ରମାଗତ ଜନସଂଖ୍ୟା ବୃଦ୍ଧି ଯୋଗୁ କ୍ରମାଗତ ଭାବରେ ଗତ ୫ ବର୍ଷ ହେଲା ଆଫ୍ରିକାର ଇଥୋପିଆ, ସୁଦାନ ପ୍ରଭୃତି ଦେଶରେ ଦୁର୍ଭିକ୍ଷ ଦେଖାଦେଇଛି । କ୍ରମେ ଅବସ୍ଥା ଜଟିଳରୁ ଜଟିଳତର ହେବାରେ ଲାଗିଛି । ଭବିଷ୍ୟତରେ ପୃଥିବୀରେ ଦେଖାଦେଇଥିବା ବିଭିନ୍ନ ସମସ୍ୟାର ସମାଧାନ କିପରି କରାଯିବ, ତାହା ବର୍ତ୍ତମାନ ଚିନ୍ତାର ବିଷୟ ହେଲାଣି । ସାଗର ଗର୍ଭରେ ଥିବା ସମସ୍ତ ସଂପଦକୁ ବିନିଯୋଗ କରି ଏହି ସମସ୍ୟାର ସମାଧାନ କେତେକାଂଶରେ କରାଯାଇ ପାରିବ ବୋଲି ମତ ଦେଲେଣି ।

ସମୁଦ୍ରରୁ ଆମକୁ ପ୍ରୋଟିନ ଯୋଗାଉଥିବା ମୁଖ୍ୟ ଖାଦ୍ୟ ମାଛକୁ ଏବେ ବେପରୱାୟ ଭାବରେ ଧରି ଆଣୁଥିବାରୁ କେତେକ ନିର୍ଦ୍ଦିଷ୍ଟ ମାଛ ବଂଶ ପ୍ରତି ବିପଦ ଦେଖାଦେଲାଣି । ହିସାବ କରି ଦେଖାଯାଇଛି ଯେ ୧୯୪୯ ମସିହାରେ ଆମେ ଖାଦ୍ୟ ପାଇଁ ସମୁଦ୍ରରୁ ଯେତିକି ମାଛ ଧରୁଥିଲୁ, ଏବେ ତାର ବହୁ ଗୁଣ ମାଛ ଅବାଧରେ ଧରି ଆଣୁଛୁ । ପ୍ରତି ଦଶବର୍ଷରେ ଶତକଡ଼ା ୨୫ ହାରରେ ସମୁଦ୍ରରୁ ଅଧିକା ମାଛ ମାରିବା ବ୍ୟବସ୍ଥା ବର୍ତ୍ତମାନ ଚାଲୁରହିଛି । ଏବେ ଆମେ ପ୍ରାୟ ୧୦୦ ନିୟୁତ ଟନ ମାଛ ଧରୁଥିବା ବେଳେ ଆଗାମୀ ୫ ବର୍ଷ ମଧ୍ୟରେ ଏହି

ପରିମାଣ ୨୫୦ ନିୟୁତ ଟନକୁ ବୃଦ୍ଧି ପାଇବ ବୋଲି ଆଶା କରାଯାଉଛି । ସମୁଦ୍ରରେ ୨୦।୨୫ ହଜାର ଜାତିର ମାଛଥିବା ବେଳେ ଆମେ ମାତ୍ର ୧୦୦ ଶହ ପ୍ରକାର ମାଛକୁ ଖାଦ୍ୟ ରୂପେ ବିନିଯୋଗ କରୁଛୁ । ଏବେ ଜାପାନ, ଚୀନ ପ୍ରଭୃତି ବହୁ ଦେଶର ଲୋକେ ମାଛ ଚାଷକୁ ସେମାନଙ୍କର ମୁଖ୍ୟ ଜୀବିକା ବୋଲି ଧରିନେଲେଣି । ମତ୍ସ୍ୟ ବ୍ୟତୀତ ମେକ୍ସିକୋ ଉପକୂଳରେ ସମୁଦ୍ରରୁ ମିଳୁଥିବା ଟିଣ, ଗନ୍ଧକ, ଆଫ୍ରିକା ଉପକୂଳରୁ ମିଳୁଥିବା ହୀରା ଓ ତମ୍ବା, ସୁନା, ରୂପା, ସୀସା ପ୍ରଭୃତି ବହୁ ଖଣିଜ ପଦାର୍ଥ ପୃଥିବୀର ବିଭିନ୍ନ ସ୍ଥାନର ସମୁଦ୍ର ବକ୍ଷରେ ଗଚ୍ଛିତ ହୋଇ ରହିଛି ।

ଏହା ବ୍ୟତୀତ ବର୍ତ୍ତମାନ ଯେତେବେଳେ ପୃଥିବୀରେ ଖଣିଜ ତୈଳର ଚାହିଦା ଆଶାତୀତ ଭାବରେ ବଢ଼ି ବଢ଼ି ଚାଲିଛି, ସେତେବେଳେ ସମୁଦ୍ର ହିଁ ଖଣିଜ ତୈଳର ଏକ ବଡ଼ ଭଣ୍ଡାର ରୂପେ ଉଭା ହୋଇ ମଣିଷ ମନରେ ନୂତନ ଆଶା ସୃଷ୍ଟି କରିଛି । ଏହା ବ୍ୟତୀତ ସମୁଦ୍ର ଜଳର ଜୁଆର ଓ ଭଟ୍ଟା ବେଳେ ଉପକୂଳର ଲହଙ୍କରୁ ଟରବାଇନ ସାହାଯ୍ୟରେ ଶକ୍ତି ସଞ୍ଚୟ ବ୍ୟବସ୍ଥା କରାଯାଇ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଉଛି । କେତେକ ୟୁରୋପୀୟ ଦେଶରେ ଏହା ସଫଳତାର ସହିତ ପରୀକ୍ଷିତ ହୋଇ ସାରିଲାଣି । ସମୁଦ୍ର ଜଳ ଉପରେ ପଡ଼ୁଥିବା ସୌର ରଶ୍ମିରୁ ଶକ୍ତି ଉତ୍ପାଦନ ହୋଇପାରିବ ବୋଲି ବୈଜ୍ଞାନିକ କ୍ଲାରେନ୍ସ ଜେନର ମତ ଦେଇଛନ୍ତି । ଜାପାନୀମାନେ ଏବେ ସମୁଦ୍ର କୂଳରେ ମାଛ ଫାର୍ମ ତିଆରି କରି ବର୍ଷକୁ ୨୫ ହଜାର ଟନ ମାଛ ଉତ୍ପାଦନ କରି ରେକର୍ଡ ସୃଷ୍ଟି କରିଛନ୍ତି । ବର୍ତ୍ତମାନ ପୃଥିବୀର ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଦେଖାଯାଉଥିବା ମାଛଙ୍କୁ ଅନ୍ୟ ଅଞ୍ଚଳକୁ ନେଇ ସେଠାରେ ବଢ଼ାଇ ଚାଷ କରିପିବାର ବ୍ୟବସ୍ଥା କରାଯାଉଛି । ସମୁଦ୍ର ସମ୍ପଦର ଉଚିତ ବିନିଯୋଗ ପାଇଁ ସମୁଦ୍ରର ସୀମାକୁ ଲାଗିଥିବା ପ୍ରାୟ ୧୦୦ଟି ପୃଥିବୀର ଦେଶ ଭିତରେ ଆଲୋଡ଼ନ ସୃଷ୍ଟି ହୋଇଛି ଏବଂ ବହୁ ସ୍ଥାନରେ ଏଥିନେଇ ଗବେଷଣା ଚାଲିଛି ।

ଏହା ବ୍ୟତୀତ ସମୁଦ୍ର ଗର୍ଭର ବିଭିନ୍ନ ପ୍ରାଣୀ ଓ ଉଦ୍ଭିଦରୁ ଆମେ ପ୍ରାୟ ୨୦ ହଜାର ପ୍ରକାରର ବହୁ ଉପାଦେୟ ଜୀବନରକ୍ଷାକାରୀ

ଔଷଧ ପାଉଥାଉ । ଆମ ସମସ୍ତଙ୍କ ପାଇଁ ଦରକାରୀ ଆୟୋଡ଼ିନ ସମୁଦ୍ର ମାଛ ଦେହରୁ ପ୍ରଚୁର ପରିମାଣରେ ମିଳିଥାଏ । ଆମେରିକାର ଉଦ୍ଭିଦ ବିଜ୍ଞାନବିତ୍ ପଲ୍ ବର୍କ ହୋଲଡ଼ର ଛଅ ଜାତିର ସମୁଦ୍ର ଆଲଜି ଉଦ୍ଭିଦକୁ ପରୀକ୍ଷା କରି ସେମାନଙ୍କ ଠାରୁ ୧୫ ପ୍ରକାର ଅତି ଦରକାରୀ ବହୁ ରୋଗ ପ୍ରତିଷେଧକ ଔଷଧ ପ୍ରସ୍ତୁତ କରିପାରିଛନ୍ତି । ଏହାବ୍ୟତୀତ ସ୍ପଞ୍ଜ, ଆଲଜି, ଶାମୁକା, କେତେ ଜାତିର ମାଛ ପ୍ରଭୃତିରୁ ଆମେ ଔଷଧ ପାଉଥାଉ । ଇନସୁଲିନ ଷ୍ଟାର ଫିସରୁ ମିଳିଥାଏ । ଅକ୍ଟୋପସରୁ ହୃଦରୋଗ ଆରୋଗ୍ୟକାରୀ ଔଷଧ ପ୍ରସ୍ତୁତ ହେଉଛି । ଗତ ଏକଶହ ବର୍ଷ ତଳେ ବିଖ୍ୟାତ ଫରାସୀ ଅର୍ଥନୀତି ବିଜ୍ଞାନୀ ଇଉଜିନ ନଓଲ ଯାହା କହିଥିଲେ ଏବେ ତାହା ପ୍ରମାଣିତ ହେବାକୁ ଯାଉଛି । ସେ ସେତେବେଳେ କହିଥିଲେ—

**"The Ocean can be turned in to an immense food factory. It can be made in to a more fruitful laboratory than the earth. Fertilize it ! Seas, rivers, and ponds ! Only the earth is cultivated. Where is the art of cultivating the waters ? Hear; Ye nations !"**

ମାତ୍ର ଏସବୁ ସତ୍ତ୍ୱେ ସମୁଦ୍ର ଆଜି ମଣିଷର ବିଭିନ୍ନ ସମସ୍ୟାର ସମାଧାନ ଦିଗରେ ପଥପ୍ରଦର୍ଶକ ହେବାକୁ ଯାଉଥିବାରୁ ଏହା ଉପରେ ଅଧିକାର ସାବ୍ୟସ୍ତ କରିବା ପାଇଁ ପୃଥିବୀବାସୀଙ୍କ ମଧ୍ୟରେ ତତ୍ପରତା ପ୍ରକାଶ ପାଇଛି । ଆମକୁ ଆଜଠୁଁ ସମୁଦ୍ର ସମ୍ବଳକୁ ଦେଖିଶୁଣି ଖର୍ଚ୍ଚ କରିବାକୁ ହେବ । ମାତ୍ର ଆଗପଛ କିଛି ନ ଭାବି ପ୍ରକୃତିଦତ୍ତ ଏହି ସମ୍ପଦକୁ ଯଦି ମାନବସମାଜ ଆଖିବୁଜି ନଷ୍ଟ କରିବାକୁ ପଛଉ ନାହିଁ ତେବେ ଏହି ବେପରବାୟ ସମ୍ପଦ ଧ୍ୱଂସର ମୂଲ୍ୟ ଦେବାକୁ ମଣିଷ ସମାଜକୁ ଭବିଷ୍ୟତରେ ବହୁ ଅନୁତାପ କରିବାକୁ ପଡ଼ିବ । ଆଜଠାରୁ

ପୃଥିବୀବାସୀ ପରସ୍ପର ମଧ୍ୟରେ ସହଯୋଗ ରକ୍ଷା କରି ଏହି ସମ୍ପଦର ଉଚିତ୍ ବିନିଯୋଗ ପାଇଁ ବାଟ ନ କାଢ଼ିଲେ ଭବିଷ୍ୟତରେ ଜୀବଜଗତକୁ ଧ୍ୱଂସମୁଖରୁ ରକ୍ଷା କରିବାକୁ କେହି ନଥିବେ । ମାନବ ହିଁ ଭବିଷ୍ୟତରେ ମାନବ ସଭ୍ୟତା ତଥା ଜୀବଜଗତର ଧ୍ୱଂସର ମୁଖ୍ୟ କାରଣ ହେବ ।



# ଓଜନ ରକ୍ଷା ପାଇଁ କୁମ୍ଭୀର କାନ୍ଦଣା

ଆମ ଶାସ୍ତ୍ରରେ ଗୋଟିଏ କଥା ଅଛି—"ଅତି ସର୍ବତ୍ର ଗର୍ହିତଂ" । ପ୍ରତ୍ୟେକ ପଦାର୍ଥର ପରିପୂର୍ଣ୍ଣତାର ଏକ ଚରମ ସୀମା ଥାଏ । ଏହି ସୀମାରେ ପହଁଞ୍ଚିବା ପରେ ଏହାର କ୍ଷୟ ବା ବିଲୋପ ଆରମ୍ଭ ହୋଇ-ଥାଏ । ଆମ୍ଭେମାନେ ଆମର ପୁରାଣ, ଇତିହାସ ଗ୍ରନ୍ଥରୁ ଏହାର ପ୍ରମାଣ ଭୂରିଅଧିକେ ପାଇଥାଉ । ଭଗବାନ ଶ୍ରୀକୃଷ୍ଣ ଯେଉଁ ଯାଦବ କୂଳକୁ ନିଜେ ଗଢ଼ିଥିଲେ ଓ ଶ୍ରେଷ୍ଠ କରିଥିଲେ ତାହାକୁ ସେ ନିଜେ ବିନାଶ କରି ଦେଇ ଗଲେ । ଆମ ଏହି ପୃଥିବୀ ପୃଷ୍ଠରେ କେତେ ବୀର, ପ୍ରତାପୀ ହିଟଲର, ନେପୋଲିୟନଙ୍କ ପରି ରାଜା, ମହାରାଜା, ସମ୍ରାଟ ରାଜତ୍ୱ କରି ଶେଷରେ ସେମାନଙ୍କର ପତନ ଦିନେ ଘଟିଛି । ଆମର ବାସସ୍ଥଳୀ ସୁନ୍ଦର, ସବୁଜ ବୃକ୍ଷ ଘେରା, ଆଲୋକିତ ପୃଥିବୀ ଏବଂ ଏଥିରେ ବାସ କରୁଥିବା କୋଟି କୋଟି ପ୍ରାଣୀ, ସଜୀବ ନିର୍ଜୀବଙ୍କର ମଧ୍ୟ କାହିଁକି ଦିନେ ବିଲୋପ ନ ଘଟିବ ସେ କଥା ମଧ୍ୟ ଆମ୍ଭେମାନେ କେହି ମନା କରି ପାରିବା ନାହିଁ । ବର୍ତ୍ତମାନ ଆମ ପୃଥିବୀବାସୀଙ୍କ ଅଜାଣତରେ ଆମର ଏହି ସୁନ୍ଦର ପୃଥିବୀ କ୍ରମେ ଧ୍ୱଂସ ଆଡ଼କୁ ଗତି କରୁଛି । ଏବଂ ପୃଥିବୀର ବିଲୋପ ପାଇଁ ଆମେ ଏହା ପୃଷ୍ଠରେ ବାସ କରୁଥିବା ବିଜ୍ଞାନୀ, ସବୁ ପ୍ରାଣୀଙ୍କଠାରୁ ବୁଦ୍ଧିମାନ, ଶ୍ରେଷ୍ଠ ମଣିଷ ହିଁ ସମ୍ପୂର୍ଣ୍ଣ ଦାୟୀ ।

ଆମ ପୃଥିବୀ ପୃଷ୍ଠର ୧୩ ରୁ ୩୦ ମାଇଲ ଉପରକୁ ଷ୍ଟ୍ରାଟୋସ-ଫିୟରରେ ଓଜନ ନାମକ ଏକ ଗ୍ୟାସ ଛତା ଆକାରରେ ପୃଥିବୀର




ବାୟୁମଣ୍ଡଳକୁ ଘୋଡ଼ାଇଥିବା ଓଜୋନ ସ୍ତର ଆମର ପୃଥିବୀ ପୃଷ୍ଠର ମଣିଷ ସମେତ ସଜୀବ ପ୍ରାଣୀଙ୍କୁ ବଞ୍ଚାଇ ରଖିଛି । ଏହି ଗ୍ୟାସ ପ୍ରତ୍ୟକ୍ଷ ଭାବରେ ପ୍ରାଣୀ ତଥା ମାନବ ପକ୍ଷରେ କ୍ଷତିକାରକ ହେଲେ ମଧ୍ୟ ସୂର୍ଯ୍ୟଠାରୁ ପୃଥିବୀ ପୃଷ୍ଠକୁ ଆସୁଥିବା ପ୍ରାଣୀମାନଙ୍କ ପାଇଁ ଅତି କ୍ଷତିକାରକ "ଅଲଟ୍ରାଭାୟୋଲେଟ୍ ରଶ୍ମି" ବା ଅତି ବାଇଗଣି ରଶ୍ମିକୁ ଶୁଷି ରଖେ । ଏହି ରଶ୍ମି ଯଦି ପୃଥିବୀ ପୃଷ୍ଠକୁ ଆସନ୍ତା ତେବେ ପୃଥିବୀ ପୃଷ୍ଠରେ ମହାପ୍ରଳୟ ମାଡ଼ି ଯାଆନ୍ତା । ପ୍ରାଣୀମାନେ ତଥା ମାନବସମାଜ ମାରାତ୍ମକ ଚର୍ମ କର୍କଟ ରୋଗରେ ଆକ୍ରାନ୍ତ ହୋଇ କାଳାନ୍ତକ କଷ୍ଟ ସହି ମୃତ୍ୟୁବରଣ କରନ୍ତେ । ଏହା ବ୍ୟତୀତ ଏହାର ପ୍ରଭାବରେ କୋଟି କୋଟି ଲୋକ ଚକ୍ଷୁ ରୋଗରେ ପୀଡ଼ିତ ହୁଅନ୍ତେ । କେତେକ ମଧ୍ୟ ଚକ୍ଷୁ ହରାନ୍ତେ । ମଣିଷ ଶରୀରର

ସ୍ନାୟୁବିଭାଗ ଉପରେ ଏହି ରଶ୍ମୀ ଗଭୀର ପ୍ରଭାବ ପକାଇ ଏହାକୁ ଅଚଳ କରି ଦିଅନ୍ତା ଏବଂ କୋଟି କୋଟି ନରନାରୀ ପ୍ରାଣୀ ଏହାର ପ୍ରଭାବରେ ଅକାଳ ମୃତ୍ୟୁ ବରଣ କରନ୍ତେ । କେତେକ ଅତି କଷ୍ଟ ସହି ଛଟପଟ ହୋଇ ଜୀବନ ବିତାନ୍ତେ । ମୋଟ ଉପରେ ଓଜନ ସ୍ତର ପୃଥିବୀ ବାୟୁ-ମଣ୍ଡଳରେ ନଥିଲେ ପୃଥିବୀ ପୃଷ୍ଠରେ ଜୀବନ ସୃଷ୍ଟି ରହି ପାରନ୍ତା ନାହିଁ । ତେଣୁ ଜୀବନରକ୍ଷାକାରୀ ଓଜନ ଗ୍ୟାସର କ୍ରମ ବିଲୋପ ବିଷୟରେ ଆମେ ଚିନ୍ତାକଲେ ଭବିଷ୍ୟତରେ ପୃଥିବୀର ଅବସ୍ଥା କଣ ହେବ ସେ କଥା ଚିନ୍ତାକରି ଭୟରେ ଲୋମମୂଳ ଟାଙ୍କୁରି ଉଠେ ।

ମାତ୍ର ଏବେ ସବୁଠାରୁ ଭୟାବହ ଘଟଣା ହେଉଛି ଯେ କ୍ରମେ ଆମର ଜୀବନରକ୍ଷାକାରୀ ଏହି ଗ୍ୟାସ ପୃଥିବୀର ବାୟୁମଣ୍ଡଳରୁ ଉଭେଇ ଯାଉଛି ଏବଂ ପରିଣାମରେ ଆମ ପୃଥିବୀବାସୀଙ୍କୁ ଏକ ଅନିଶ୍ଚିତ ଭବିଷ୍ୟତ ଆଡ଼କୁ ଟାଣି ନେଉଛି । ଆମେରିକାର ନ୍ୟାସନାଲ ଏକାଡେମୀ ଅଫ ସାଇନସ୍ ତରଫରୁ କରାଯାଇଥିବା ଏକ ସର୍ଭେରୁ ବୈଜ୍ଞାନିକମାନେ ସତର୍କବାଣୀ ଶୁଣାଇ କହିଛନ୍ତି ଯେ ପୃଥିବୀର ବାୟୁମଣ୍ଡଳରୁ ମାତ୍ର ଏକ ଭାଗ ଓଜନ ଗ୍ୟାସ ସ୍ତର କମିଲେ କେବଳ ଯୁକ୍ତରାଷ୍ଟ୍ର ଆମେରିକାରେ ବର୍ଷକୁ ଦଶହଜାର ଅଧିକ ଚର୍ମ କର୍କଟ ରୋଗୀଙ୍କ ସଂଖ୍ୟା ବୃଦ୍ଧି ପାଇବ । ସେହି ତୁଳନାରେ ଅନ୍ୟ ଦେଶମାନଙ୍କର ଅବସ୍ଥା ମଧ୍ୟ ହେବ ।

ଆନ୍ତର୍ଜାତିକ ସ୍ତରରେ ୧୦୦ ଜଣ ବିଶିଷ୍ଟ ବୈଜ୍ଞାନିକଙ୍କୁ ନେଇ ଗତ ୧୭ ମାସ ଧରି ଓଜନ ବଳୟ ବିଷୟରେ କରାଯାଇଥିବା ସର୍ଭେରୁ ଜଣାପଡ଼ୁଛି ଯେ ବର୍ତ୍ତମାନ ସୁଦ୍ଧା ଉତ୍ତର ମେରୁ, ଉତ୍ତର ଗୋଲାର୍ଦ୍ଧର ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା, ପଶ୍ଚିମ ୟୁରୋପ, ଚୀନ, ସୋଭିଏତ ରୁଷ ପ୍ରଭୃତି ଦେଶର ଉପରିଭାଗରୁ ଏହି ଗ୍ୟାସ କ୍ରମେ ଉଭେଇଯାଉ-ଥିବାର ଲକ୍ଷ୍ୟ କରାଯାଉଛି । ଓଜନ ବଳୟ ସମୀକ୍ଷା କମିଟିର ଚେୟାର-ମ୍ୟାନ ମିଃ ରବର୍ଟ ଟି: ଓ୍ବାଟସନ ୧୯୮୮ ମାର୍ଚ୍ଚ ୧୫ ତାରିଖରେ ଏକ ବିବୃତ୍ତିରେ ବିଶ୍ୱବାସୀଙ୍କୁ ଏହି ଗ୍ୟାସ ରକ୍ଷା କରିବାକୁ କରୁଣ ନିବେଦନ କରି ଏହା ଯଦି ବର୍ତ୍ତମାନ ଯେପରି କ୍ଷୟ ହେଉଛି ସେହିପରି ହାରରେ

କ୍ଷୟ ହୋଇ ଚାଲେ ତେବେ ପୃଥିବୀର ଭବିଷ୍ୟତ ବିଷୟରେ ସତର୍କବାଣୀ ଶୁଣାଇ ବିଶ୍ୱବାସୀ ଓଜନ ରକ୍ଷାପାଇଁ ଆଜଠାରୁ ସଂଯମତା ଆଚରଣ କରିବାକୁ ନିବେଦନ କରିଛନ୍ତି । ଆଜିର ସଭ୍ୟମାନବ ଏହି ଓଜନ ଗ୍ୟାସର ବିଲୋପ ପାଇଁ ମୁଖ୍ୟତଃ ଦାୟୀ । ଯିଏ ଯେଉଁ ଓଜନ ଗ୍ୟାସ ପୃଥିବୀ ପୃଷ୍ଠରେ ପ୍ରଥମ ଜୀବନର ସୃଷ୍ଟି କରିଥିଲା ଆଜି ତାହା ଜୀବ-ଜଗତର ବିନାଶ କରିବା ଭଳି ଅବସ୍ଥା ଦେଖାଦେଲାଣି ।

ଆମ୍ଭମାନଙ୍କ ମଧ୍ୟରୁ ବୋଧହୁଏ ଅଧିକାଂଶ ଜାଣି ନଥିବେ ଏହି ଓଜନ ଗ୍ୟାସ ଦ୍ୱାରା ଯିଏ ପୃଥିବୀ ପୃଷ୍ଠରେ ପ୍ରଥମ ଜୀବନର ସୃଷ୍ଟି ହୋଇଥିଲା । ପ୍ରାୟ ୬୦୦ କୋଟି ବର୍ଷ ପୂର୍ବେ ପୃଥିବୀର ସୃଷ୍ଟି ହେଲା । ସେତେବେଳେ ପୃଥିବୀ ପୃଷ୍ଠରେ ଓଜନ ଗ୍ୟାସ ନଥିଲା । ଫଳରେ ସୂର୍ଯ୍ୟ-ଠାରୁ ଅତି ମାରାତ୍ମକ, ପ୍ରଖର ଅଲଟ୍ରାଭାଓଲେଟ ବା ଅତି ବାଇଗଣୀ ରଶ୍ମି ସିଧାସଳଖ ଆସି ପୃଥିବୀ ପୃଷ୍ଠରେ ପଡ଼ୁଥିଲା । ଏହି ଶକ୍ତିଶାଳୀ ରଶ୍ମି ପୃଥିବୀ ପୃଷ୍ଠରେ ପଡ଼ି କେତେକ ଜଟିଳ ରାସାୟନିକ ପ୍ରକ୍ରିୟା ପରି-ଚାଳନା କରିବା ପାଇଁ ଶକ୍ତି ଯୋଗାଉ ଥିଲା ଏବଂ ରାସାୟନିକ ପ୍ରକ୍ରିୟା ବାରମ୍ବାର ସଂଘଟିତ ହୋଇ ଜଡ଼ ପଦାର୍ଥରୁ ହିଁ ପ୍ରଥମ ଜୀବନର ସୂତ୍ରପାତ ହୋଇଥିଲା । ତେଣୁ ଓଜନ ଜୀବନର ସୃଷ୍ଟିକାରୀ ପୁଣି ସୃଷ୍ଟିର ଧ୍ୱଂସକାରୀ । **"The absence of ozone allowed life to begin and its Presence allowed life to Continue and again its absence allowed life to diminise"** ଏହି ଓଜନ ଗ୍ୟାସ ପୃଥିବୀର ପ୍ରାଣୀ ଜଗତ ସୃଷ୍ଟି କରି ସାରିବା ପରେ ପୁଣି ଯଦି ଉଭେଇଯାଏ ତେବେ ପ୍ରାଣୀଜଗତର ଧ୍ୱଂସର କାରଣ ହେବ ।

ପୃଥିବୀର ବାୟୁମଣ୍ଡଳରେ ଏହି ଗ୍ୟାସ କିପରି ପ୍ରଥମେ ସୃଷ୍ଟି ହେଲା ତାହା କୌତୂହଳପ୍ରଦ । ପୃଥିବୀର ସୃଷ୍ଟି ବେଳେ ଏହି ଗ୍ୟାସ ବାୟୁମଣ୍ଡଳରେ ନଥିଲା । ସେତେବେଳେ ପୃଥିବୀର କୌଣସି ନିର୍ଦ୍ଦିଷ୍ଟ ବାୟୁମଣ୍ଡଳ ନଥିଲା । ସୌର ବାୟୁ ଦ୍ୱାରା ପୃଥିବୀର ବାୟୁମଣ୍ଡଳ ନିୟନ୍ତ୍ରିତ

ହୋଇଥିଲା । ବିଶେଷ ପର୍ଯ୍ୟାୟରେ ଅଗ୍ନେୟଗିରିରୁ ଅଗ୍ନି ଓ ବାଷ୍ପ ଉଦଗିରଣ ହୋଇ ବାୟୁମଣ୍ଡଳ ସୃଷ୍ଟି ହେଲା । ଏହି ବାୟୁମଣ୍ଡଳରେ ସାଧାରଣତଃ ଜଳୀୟ ବାଷ୍ପ, ଅଙ୍ଗାରକାମ୍ଳ, ଯବକ୍ଷାରଜାନ, ସଲଫର ଡାଇଅକ୍ସାଇଡ଼, ହାଇଡ୍ରୋଜେନ, କ୍ଲୋରିନ ଗ୍ୟାସ ଥିଲା । ସେତେବେଳେ ବାୟୁମଣ୍ଡଳରେ ଅମ୍ଳଜାନ କିମ୍ବା ଓଜନ ଗ୍ୟାସ ନଥିଲା । ଏହି ଗ୍ୟାସ ମଧ୍ୟ ଅଗ୍ନେୟଗିରିରୁ ଉଦଗିରଣ ହୋଇନଥିଲା । ବର୍ତ୍ତମାନର ପୃଥିବୀ ପୃଷ୍ଠର ଅମ୍ଳଜାନ ପୂର୍ଣ୍ଣ ବାୟୁମଣ୍ଡଳ ଗଠନ ପାଇଁ ପୃଥିବୀ ପୃଷ୍ଠରେ ଥିବା ବହୁ ଉଦ୍ଭିଦ ଓ ପ୍ରାଣୀମାନେ ହିଁ ଦାୟୀ । ପ୍ରଥମ ଜୀବନ ସମ୍ଭବତଃ ଅଙ୍ଗାର, ଉଦଯାନ, ଯବକ୍ଷାରଜାନ, ଅମ୍ଳଜାନ ଗ୍ୟାସର ସମଷ୍ଟିଗତ ପ୍ରକ୍ରିୟା ଦ୍ୱାରା ଏହାର ସୂକ୍ଷ୍ମ ପଦାର୍ଥରୁ ହିଁ ଜନ୍ମ ନେଇଥିବାର ଜଣାଯାଏ ।

ଜୀବନ ରକ୍ଷାକାରୀ ଏହି ଓଜନ ଗ୍ୟାସ ଅମ୍ଳଜାନ ବା ଅକ୍ସିଜେନ ଗ୍ୟାସର ଏକ ଅଂଶ । ଏହା ପୃଥିବୀ ପୃଷ୍ଠର ବାୟୁମଣ୍ଡଳର ଉପର ଥଣ୍ଡା ଅଞ୍ଚଳରେ ଥାଏ । ସାଧାରଣ ଅମ୍ଳଜାନ ଅଣୁ ଉପରେ ସୂର୍ଯ୍ୟରଶ୍ମି ପଡ଼ିଲେ ସୂର୍ଯ୍ୟରଶ୍ମିର ବାଇଗଣୀରଶ୍ମି ସହିତ ଏହା ପିଟି ହୋଇ ଏଥିରୁ ଏକ ମୁକ୍ତ ଅମ୍ଳଜାନ ପରମାଣୁ ଓ ଏକ ମୁକ୍ତ ଅମ୍ଳଜାନ ଅଣୁ ନିର୍ଗତ ହୁଏ । ମୁକ୍ତ ଅମ୍ଳଜାନ ପରମାଣୁ ଅମ୍ଳଜାନ ($O_2$) ସହିତ ମିଶି ଓଜନ ($O_3$)ର ସୃଷ୍ଟି ହୁଏ । ସୂର୍ଯ୍ୟ ରଶ୍ମିରୁ ଗ୍ରହଣ କରୁଥିବା ଉତ୍ତପ୍ତ ରଶ୍ମିକୁ ଗ୍ରହଣ କରି ଓଜନସ୍ତର ଉତ୍ତପ୍ତ ହୋଇ ଷ୍ଟ୍ରାଟୋସଫିୟରର ଉପରସ୍ତରକୁ ଗରମ କରିଥାଏ ଏବଂ ଏହା ଏକ ଢୋଡ଼ଣୀ ପରି ରହିଥାଏ ।

ଓଜନ ଅଣୁ ଓ ଆରି ପ୍ରକ୍ରିୟା ବାୟୁମଣ୍ଡଳରେ କ୍ରମାଗତ ଚାଲିଥାଏ ମାତ୍ର ଆମେ ପ୍ରାକୃତିକ ପ୍ରଣାଳୀରେ ମଧ୍ୟ ଏହି ଗ୍ୟାସର ବିନାଶ କରିଥାଉ । ଓଜନ ନଷ୍ଟ କରୁଥିବା ଅନ୍ୟ କେତେକ ଗ୍ୟାସ ହେଉଛି ଅଙ୍ଗାରକାମ୍ଳ, ମିଥେନ ଓ ନାଇଟ୍ରସ ଡାଇଅକ୍ସାଇଡ଼ । ପୃଥିବୀ ପୃଷ୍ଠରେ କୋଇଲା ଜଳିବା ଦ୍ୱାରା ବହୁ ପରିମାଣର ଅଙ୍ଗାର ଅଣୁ ତଥା ନାଇଟ୍ରସ

ଅକସାଇଡ୍‌ରୁ ଅଙ୍ଗାରଅଣୁ ବାୟୁମଣ୍ଡଳକୁ ପ୍ରବେଶ କରେ । ନ୍ୟାସନାଲ ଏକାଡେମୀ ଅଫ ସାଇନ୍‌ସ ପକ୍ଷରୁ କରାଯାଇଥିବା ଗବେଷଣାରୁ ଜଣାଯାଇଛି ଯେ ଏହି ନାଇଟ୍ରସ ଅକ୍‌ସାଇଡ୍ ପୃଥିବୀ ପୃଷ୍ଠ ଛାଡ଼ିବାର ୫ ବର୍ଷ ମଧ୍ୟରେ ଧୀରେ ଧୀରେ ବାୟୁମଣ୍ଡଳର ଉପର ଭାଗର ପ୍ରାୟ ୧୫ ମାଇଲ ବା ତାଠାରୁ ଉପରକୁ ଚାଲିଯାଇ ସେଠାରେ ସୂର୍ଯ୍ୟର ବାଇଗଣୀ ରଶ୍ମି ସହିତ ମିଶି ହୋଇ ବିଭିନ୍ନ ଅଂଶରେ ପରିଣତ ହୋଇ ଓଜନ ସ୍ତରକୁ ଆକ୍ରମଣ କରେ ଏବଂ ଓଜନ ଗ୍ୟାସକୁ ନଷ୍ଟ କରିଥାଏ । ଏହା ବ୍ୟତୀତ ପୃଥିବୀ ପୃଷ୍ଠର ପଚାସଡ଼ା ପଦାର୍ଥ ତଥା ବହୁ ପ୍ରାଣୀଙ୍କ ଅନ୍ତଃନଳୀରୁ ସୃଷ୍ଟି ହେଉଥିବା ମିଥେନ ନାମକ ଅଙ୍ଗାର-ଉଦଜାନ ମିଶ୍ରିତ ଗ୍ୟାସ ମଧ୍ୟ ଓଜନ ସ୍ତରକୁ ଆକ୍ରମଣ କରି ଏହାର ବିଲୋପ ସଂଘଟିତ କରିଥାଏ ।

ମାତ୍ର ଓଜନସ୍ତରକୁ ନଷ୍ଟ କରୁଥିବା ମୁଖ୍ୟ ବସ୍ତୁ ହେଉଛି ଆମ ମଣିଷ ତିଆରି କ୍ଲୋରୋଫ୍ଲୋର କାର୍ବନ ବା ସି: ଏଫ୍: ସି: ଗ୍ୟାସ । ଆମେ ବ୍ୟବହାର କରୁଥିବା ରେଫ୍ରିଜେରେଟରରୁ ଏହି ଗ୍ୟାସ ସାଧାରଣତଃ ବହୁ ପରିମାଣରେ ନିର୍ଗତ ହୋଇଥାଏ ।

ଏହା ବ୍ୟତୀତ ପ୍ଲାଷ୍ଟିକ, ଫୋମ, ଇଲେକ୍‌ଟ୍ରନିକ ପଦାର୍ଥ ତିଆରି କାରଖାନା ପ୍ରଭୃତିରୁ ମଧ୍ୟ ଏହି ଗ୍ୟାସ ନିର୍ଗତ ହୋଇଥାଏ । ୧୯୨୮ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ଜେନେରାଲ ମୋଟର କମ୍ପାନୀରେ କାମ କରୁଥିବା କେତେଜଣ ରସାୟନବିତ୍ ଏକ ନୂଆ ଗ୍ୟାସ ଉଦ୍ଭାବନ କରିଥିଲେ । ଏହି ଗ୍ୟାସ ଖୁବ ଶୀଘ୍ର ଅନ୍ୟ କୌଣସି ଗ୍ୟାସ ସହିତ ମିଶି ନ ଥାଏ । ଏହି ଗ୍ୟାସ ସେତେବେଳେ ରେଫ୍ରିଜେରେଟରରେ ବ୍ୟବହୃତ ହେଉଥିଲା । ମାତ୍ର ୧୯୬୦ ପରଠାରୁ ସେହି ଜାତୀୟ ଗ୍ୟାସ କ୍ଲୋରୋ-ଫ୍ଲୋରୋକାର୍ବନର ବ୍ୟବହାର ବିଶେଷଭାବେ ଆରମ୍ଭ ହେଲା ।

୧୯୭୨ ମସିହାରେ ବୈଜ୍ଞାନିକ ରୋଲାଣ୍ଡ ଜାଣିପାରିଲେ ଯେ ଏହି କ୍ଲୋରୋଫ୍ଲୋରୋକାର୍ବନ ଗ୍ୟାସ ଅଧିକ ପରିମାଣରେ ଉତ୍ତର ଓ ଦକ୍ଷିଣ ମେରୁ ଅଞ୍ଚଳରେ ଜମା ହୋଇ ରହିଛି । ଏହି ଗ୍ୟାସ ପୃଥିବୀ

ପୃଷ୍ଠର ରେଫ୍ରିଜରେଟର ତଥା ଅନ୍ୟାନ୍ୟ ସ୍ଥାନରୁ ନିର୍ଗତ ହେବା ପରେ ଷ୍ଟ୍ରାଟୋସଫିୟରରେ ପହଁଞ୍ଚ ସେଠାରେ ସୂର୍ଯ୍ୟର ବାଇଗଣୀ ରଶ୍ମି ସଂସ୍ପର୍ଶରେ ଆସିବା ପରେ ଭାଙ୍ଗିଯାଇ ମୁକ୍ତ କ୍ଲୋରିନ ଅଣୁ ନିର୍ଗତ କରିଥାଏ । ଏହି ମୁକ୍ତ କ୍ଲୋରିନ ଅଣୁ ଓଜନ ଗ୍ୟାସକୁ ଆକ୍ରମଣ କରି ଅମ୍ଳଜାନ ଓ କ୍ଲୋରିନ ମନୋକ୍ସାଇଡ଼ (O.+Clo) ଗ୍ୟାସ ସୃଷ୍ଟି କରେ । ଏହା ପରେ କ୍ଲୋରିନ ମନୋକ୍ସାଇଡ଼ ମୁକ୍ତ ଅକ୍ସିଜେନ ଅଣୁ ସହିତ ମିଶି ଅକ୍ସିଜେନ ଓ ମୁକ୍ତ କ୍ଲୋରିନ ଅଣୁ ନିର୍ଗତ କରି-ଥାଏ । ତେଣୁ ପରି ଏହି ପ୍ରକ୍ରିୟା ଚାଲୁରହି କ୍ରମାଗତ ଓଜନ ଅଣୁକୁ ନଷ୍ଟ କରି ଚାଲିଥାଏ । ଗବେଷଣାରୁ ଶ୍ରୀ ରୋଲାଣ୍ଡ ମତ ଦେଇଛନ୍ତି ଯେ ଆମେ ପୃଥିବୀ ପୃଷ୍ଠରୁ ଛାଡ଼ୁଥିବା ଗୋଟିଏ କ୍ଲୋରିନ ଅଣୁ ଏକ ଲକ୍ଷ ଓଜନ ଅଣୁକୁ ନଷ୍ଟ କରେ ।

୧୯୭୪ ମସିହାରେ ବୈଜ୍ଞାନିକ ରୋଲାଣ୍ଡ ଓ ମୋଲିନା ବିଶ୍ୱ-ବାସୀଙ୍କୁ ପ୍ରଥମେ ସେମାନଙ୍କର ସତର୍କବାଣୀ ଶୁଣାଇ ଓଜନ ବଳୟର ରକ୍ଷା ପାଇଁ କ୍ଲୋରଫ୍ଲୋରୋକାର୍ବନ ଗ୍ୟାସ ଉତ୍ପାଦନ ବନ୍ଦ କରିବାକୁ ନିବେଦନ କରି ଏହାକୁ ରକ୍ଷା କରିବାକୁ ଏବେଠାରୁ ବିଶ୍ୱବାସୀ ତତ୍ପର ନହେଲେ ଭବିଷ୍ୟତରେ ଚର୍ମକର୍କଟ ରୋଗ ବୃଦ୍ଧିପାଇ ପୃଥିବୀରେ ପ୍ରଳୟ ଦେଖାଦେବ ବୋଲି ମତ ଦେଇଥିଲେ । ମାତ୍ର ତାଙ୍କର ଏହି ମତାମତ ପରେ ପୃଥିବୀରେ ବିଶେଷରେ ୟୁରୋପରେ ଏହି ଗ୍ୟାସର ଉତ୍ପାଦନ କମିବା ପରିବର୍ତ୍ତେ ବଢ଼ି ବଢ଼ି ଚାଲିଛି ଏବଂ ବର୍ତ୍ତମାନ ଏହି ଗ୍ୟାସ ବହୁ ପରିମାଣରେ ଉତ୍ପାଦନ କରୁଥିବା ପୃଥିବୀର ଆମେରିକା, କାନାଡ଼ା, ସୋଭିଏତ ରୁଷ, ପଶ୍ଚିମ ୟୁରୋପ ପ୍ରଭୃତି ଦେଶର ଆକାଶରୁ ଏହି ଗ୍ୟାସ କ୍ରମାଗତ ଭାବରେ କ୍ଷୟ ହେବାରେ ଲାଗିଛି ବୋଲି ଗତ ୧୭ ମାସ ଧରି ଓଜନ ବଳୟ ବିଷୟରେ ଗବେଷଣା କରୁଥିବା ୧୦୦ ଜଣ ବିଶ୍ୱର ବୈଜ୍ଞାନିକ ଗତ ମାର୍ଚ୍ଚ ୧୫ ତାରିଖରେ ମତ ଦେଇଛନ୍ତି । ଭବିଷ୍ୟତର ଏହି ପ୍ରଳୟ ଆଡ଼କୁ କେହି ଯେପରି କାନ ଦେବାକୁ ରାଜି ନୁହଁନ୍ତି ।

ବର୍ତ୍ତମାନ ଦକ୍ଷିଣ ମେରୁରୁ ଓଜନ ସ୍ତର ଉଭେଇଯାଇ ସେଠାରେ ଏକ ବିରାଟ ଓଜନ ଗର୍ତ୍ତ ସୃଷ୍ଟି ହୋଇସାରିଛି । ଏବେ ଏହି ଗର୍ତ୍ତ ସୃଷ୍ଟି



[ଆଣ୍ଟାର୍କଟିକା ମହାଦେଶ ଉପରେ ସୃଷ୍ଟି ହୋଇଥିବା ଓଜନ ଗର୍ତ୍ତ]

ପରେ ପରେ ପୃଥିବୀବାସୀଙ୍କ ମନରେ ଚେତା ପଶିବା ପରି ମନେ ହେଉଛି । ବ୍ରିଟିଶ ଆଣ୍ଟାର୍କଟିକା ଅଭିଯାତ୍ରୀ ଦଳ ୧୯୮୩ ମସିହାରେ ଆଣ୍ଟାର୍କଟିକା ଯାଇଥିବା ବେଳେ ସେଠାରେ ସୃଷ୍ଟି ହୋଇଥିବା ଏହି ଓଜନ ଗର୍ତ୍ତ ବିଷୟରେ ପ୍ରଥମେ ମତ ଦେଇଥିଲେ । ୧୯୮୬ ମସିହାରେ ଆମେରିକାର ଆଣ୍ଟାର୍କଟିକାଠାରେ ଥିବା ଗବେଷଣା କେନ୍ଦ୍ର ପକ୍ଷରୁ ଦଳେ ବୈଜ୍ଞାନିକ ଏହି ଓଜନ ଗର୍ତ୍ତ ବିଷୟରେ ଗବେଷଣା କରିଥିଲେ । ସେମାନେ କେତେକ ଅତ୍ୟାଧୁନିକ ଯନ୍ତ୍ରପାତି, ବେଲୁନ ଓ ଏକପ୍ରକାର

ଅତ୍ୟାଧୁନିକ ଉଡ଼ାଜାହାଜ ER-2 ବ୍ୟବହାର କରି ଏହି ଓଜନ ଗର୍ତ୍ତକୁ ପରୀକ୍ଷା କରିଥିଲେ । ଗତ ୧୭ ମାସ ଧରି ବିଶ୍ୱର ୧୦୦ ଜଣ ବୈଜ୍ଞାନିକଙ୍କୁ ନେଇ ଓଜନ ବଳୟ ସୁରକ୍ଷା କମିଟିର ବୈଜ୍ଞାନିକମାନେ ମଧ୍ୟ ଏହି ଓଜନ ଗର୍ତ୍ତକୁ ପରୀକ୍ଷା କରି କ୍ରମାଗତ ଭାବେ ଓଜନ କ୍ଷୟ ପାଉଥିବା ଏବଂ ଏହି ଅଞ୍ଚଳରେ ଏକ ବିରାଟ ଓଜନ ଗର୍ତ୍ତ ସୃଷ୍ଟି ହୋଇଥିବା ବିଷୟରେ ମତ ପ୍ରକାଶ କରିଛନ୍ତି । ବୈଜ୍ଞାନିକମାନେ ମତ ଦେଇଛନ୍ତି ଯେ ବର୍ତ୍ତମାନ ସୁଦ୍ଧା ସମଗ୍ର ପୃଥିବୀକୁ ଘୋଡ଼ାଇ ରଖିଥିବା ଓଜନ ସ୍ତରର ଶତକଡ଼ା ସାତ ଭାଗ ନଷ୍ଟ ହୋଇ ସାରିଲାଣି ।

ଗତ ସେପ୍ଟେମ୍ବର ମାସରେ ମଣ୍ଟ୍ରିଲଠାରେ ୨୪ଟି ଦେଶର ପ୍ରତିନିଧିମାନଙ୍କୁ ନେଇ ଗଠିତ ଏକ ଆଲୋଚନାରେ ପୃଥିବୀରେ ଓଜନ ନଷ୍ଟ କରୁଥିବା ଗ୍ୟାସ ଉତ୍ପାଦନ କମାଇବାକୁ ସ୍ଥିର କରି ଏକ ରାଜିନାମା ସ୍ୱାକ୍ଷରିତ ହୋଇଛି । ଏଥିରେ ସ୍ୱାକ୍ଷର କରିଥିବା ଦେଶମାନଙ୍କ ମଧ୍ୟରେ ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା, ଜାପାନ ଏବଂ ୧୨ଟି ୟୁରୋପୀୟ ଦେଶ ଅଛନ୍ତି । ଏହି ସବୁ ଦେଶ ବାର୍ଷିକ ପୃଥିବୀରେ ତିଆରି ହେଉଥିବା ପ୍ରାୟ ଏକ କୋଟି ଟନ କ୍ଲୋରୋଫ୍ଲୋରକାର୍ବନ ମଧ୍ୟରୁ ତିନିଭାଗରୁ ଦୁଇଭାଗ ତିଆରି କରିଥାନ୍ତି । ଏହି ଚୁକ୍ତିରେ ସୋଭିଏତ ପ୍ରତିନିଧି ଶ୍ରୀ ଭ୍ଲାଡ଼ିମିର ଜାକାରୋଭ ଦସ୍ତଖତ କରିନଥିଲେ ମଧ୍ୟ ସେ ଏହି ଚୁକ୍ତିକୁ ସମର୍ଥନ କରିଛନ୍ତି । ଏହି ସମ୍ମିଳନୀରେ ବିଶ୍ୱର ପ୍ରାୟ ୧୫୦ ଜଣ ବୈଜ୍ଞାନିକ, ପରିବେଶ ବିଜ୍ଞାନୀ ଯୋଗଦେଇ ପୃଥିବୀକୁ ଏ ପ୍ରକାର ପ୍ରାକୃତିକ ବିପତ୍ତିରୁ ରକ୍ଷା କରିବାକୁ ଆଲୋଚନା କରିଥିଲେ । ଅତି ଅଳ୍ପ କ୍ଲୋରୋଫ୍ଲୋର କାର୍ବନ ପ୍ରସ୍ତୁତ କରୁଥିବା ବିକାଶଶୀଳ ଦେଶମାନେ ଏକ ନିୟନ୍ତ୍ରିତ ହାରରେ ଆଗାମୀ ୧୦ ବର୍ଷ ପାଇଁ ଏହି ଗ୍ୟାସ ଉତ୍ପାଦନ କରିପାରିବେ ବୋଲି ମଣ୍ଟ୍ରିଲ ସମ୍ମିଳନୀ ମତ ଦେଇଛି ।

ଏହି ଗ୍ୟାସ ବ୍ୟତୀତ ୧୯୮୨ରେ ମେକ୍ସିକୋର ଇଲଚୈଚୋନ ଆଗ୍ନେୟଗିରିରୁ ଅଗ୍ନି ଉଦ୍‌ଗିରଣ ଦ୍ୱାରା ମଧ୍ୟ କେତେକ ପରିମାଣରେ ଓଜନ ସ୍ତର ନଷ୍ଟ ହୋଇଥିବାର ଜଣାଯାଏ । ବର୍ତ୍ତମାନ ଓଜନ ସ୍ତର

ବିଷୟରେ ବହୁ ବିଶ୍ୱ ସଙ୍ଗଠନ ପକ୍ଷରୁ ଗବେଷଣା କାମ ହାତକୁ ନିଆଯାଇଛି । ସେଥିମଧ୍ୟରୁ ଆମେରିକାର ନାସା ଗବେଷଣା ସଂସ୍ଥା, ଜର୍ମାନୀର ଜାତୀୟ ସମୁଦ୍ର ଓ ବାୟୁମଣ୍ଡଳ ପରିଚାଳନା ସଂସ୍ଥା, ମିଳିତ ଜାତିସଂଘର ମେଟ୍ରୋଲୋଜିକାଲ ସଂସ୍ଥା; ଓ ମିଳିତ ଜାତିସଂଘର ପରିବେଶ ବିଭାଗ ଅନ୍ୟତମ । ଆସନ୍ତା ୧୦ ବର୍ଷ ମଧ୍ୟରେ ଯେତେ ସମ୍ଭବ ଏହି ଗ୍ୟାସ ବ୍ୟବହାର ନ କମାଇଲେ ପୃଥିବୀବାସୀଙ୍କୁ ଆଉ ରକ୍ଷା ନାହିଁ । ନ୍ୟୂନ ପକ୍ଷରେ ୨୦ ଭାଗ ଯାଏ ଏହି ଗ୍ୟାସ ବ୍ୟବହାର କମାଇବାକୁ ମଣ୍ଟ୍ରିଲ ସମ୍ମିଳନୀ ତଥା ବିଶ୍ୱ ବୈଜ୍ଞାନିକମାନେ ମତ ପ୍ରକାଶ କରୁଛନ୍ତି ।

୧୯୮୮ ମାର୍ଚ୍ଚ ୧୫ ତାରିଖରେ ବିଶ୍ୱ ପରିବେଶ ସଂସ୍ଥା **(WMO)**ର ଡେପୁଟି ସେକ୍ରେଟାରୀ ଜେନେରାଲ ମିଃ ଜେମସ୍ ବ୍ରୁସ ଏକ ନିବେଦନରେ ଯଥାସମ୍ଭବ କ୍ଲୋରଫ୍ଲୋରକାର୍ବନ ଗ୍ୟାସ ବ୍ୟବହାର କମାଇବାକୁ ପୃଥିବୀବାସୀଙ୍କୁ ନିବେଦନ କରିଛନ୍ତି । ଏହି ସଂସ୍ଥାର ସିନିୟର ବୈଜ୍ଞାନିକ ଡକ୍ଟର ରାମ ସୁନ୍ଦରରମଣ ମଧ୍ୟ ଏହି ମର୍ମରେ ପୃଥିବୀବାସୀଙ୍କୁ ନିବେଦନ କରିଛନ୍ତି ।

ତେଣୁ ବର୍ତ୍ତମାନ ମଧ୍ୟ ଆମ ହାତରେ ସମୟ ଅଛି । ଏହିପରି ଗୁରୁତର ପ୍ରଳୟଙ୍କାରୀ ସମସ୍ୟା ପ୍ରତି ଯଦି ମଣିଷ ବେଖାତିର ପ୍ରଦର୍ଶନ କରି "ଓଜନ ଗ୍ୟାସ ରକ୍ଷା ପାଇଁ କେବଳ କୁମ୍ଭୀର କାନ୍ଦଣା" ଦେଖାଏ ତେବେ ଭବିଷ୍ୟତରେ ତାକୁ ରକ୍ଷା କରିବାକୁ କେହି ନଥିବେ । ତେଣୁ ଆଜଠାରୁ ଏହି ବିଷୟରେ ସମଗ୍ର ମାନବ ସମାଜ ମଧ୍ୟରେ ଜନଜାଗରଣ ସୃଷ୍ଟି ହେଉ ।



# ପୃଥିବୀ ବାହାରର ଜୀବନ !

ବିଶ୍ୱ ବ୍ରହ୍ମାଣ୍ଡ କେତେ ବିରାଟ । ଆଜର ବିଂଶ ଶତାବ୍ଦୀର ଶେଷ ଭାଗରେ ଉପନୀତ ପୃଥିବୀର ବିଜ୍ଞାନୀ ମାନବ ସଭ୍ୟତାର ଚରମସୀମାରେ ଉପନୀତ ହୋଇ ଯେତେବେଳେ ବିଶ୍ୱ ବ୍ରହ୍ମାଣ୍ଡ ବିଷୟରେ ଥରେ ଭାବେ ସେତେବେଳେ ସେ ନିଜକୁ ଅତି କ୍ଷୁଦ୍ର, ତୁଚ୍ଛ ବୋଲି ମନେ କରେ । ବିଶ୍ୱ ବ୍ରହ୍ମାଣ୍ଡର ବ୍ୟାପକତା ନିକଟରେ ଆମେ ପୃଥିବୀ ପୃଷ୍ଠର ମଣିଷ, ଆମର ଜୀବନଧାରୀ ପୃଥିବୀ, ଆଲୋକ ପ୍ରଦାନକାରୀ ସୂର୍ଯ୍ୟ ତଥା ସୌର ମଣ୍ଡଳ କେତେ ଗ୍ରୋଟ । ବିଶ୍ୱ ବ୍ରହ୍ମାଣ୍ଡ ବିଷୟରେ ଗବେଷଣା କରିବାକୁ ଆଗେଇବା ବେଳେ ସ୍ୱତଃ ଆମକୁ ହତାଶ ଲାଗେ ।

ବୈଜ୍ଞାନିକ ସାର୍ ଜେମସ୍ ଜିନସ୍ ଆମ ସୌରଜଗତ ତଥା ପୃଥିବୀକୁ ବିଶ୍ୱବ୍ରହ୍ମାଣ୍ଡ ସହିତ ତୁଳନା କରି କହିଥିଲେ ସମଗ୍ର ବିଶ୍ୱରେ ରହିଥିବା କୋଟି କୋଟି ନକ୍ଷତ୍ରଶ୍ରେଣୀରେ ସୂର୍ଯ୍ୟପରି ଗୋଟିଏ ଗୋଟିଏ ଯେତେ ନକ୍ଷତ୍ର ରହିଛନ୍ତି ସେମାନଙ୍କର ସଂଖ୍ୟା ଆମ ସମୁଦ୍ରରେ ଥିବା ବାଲିକଣାର ସଂଖ୍ୟା ସହିତ ସମାନ । ଆମର ସୂର୍ଯ୍ୟ ସେଥିମଧ୍ୟରୁ ଗୋଟିଏ କ୍ଷୁଦ୍ର ବାଲିକଣା ମାତ୍ର । ଏହି କ୍ଷୁଦ୍ର ସୂର୍ଯ୍ୟ ବାଲିକଣା ଆମ ପୃଥିବୀଠାରୁ ୩ ଲକ୍ଷ ଗୁଣ ଅଧିକ ଓଜନର ଓ ୧୩ ଲକ୍ଷ ଗୁଣ ଅଧିକ ବଡ଼ ।

ତେଣୁ ବିଶ୍ୱର ବିଶାଳତା ଆଗରେ ଆମର ପୃଥିବୀ କେତେ ଗ୍ରୋଟ ଏଇଥିରୁ ଆମକୁ ଅନୁମାନ କରିବାକୁ ହେବ । ଆମେ ଆମର ପୃଥିବୀକୁ ବହୁତ ବଡ଼ ଭାବୁଥିଲେ ମଧ୍ୟ ଏହା କେତେ ଗ୍ରୋଟ ଏବଂ ଏଥିରେ ବାସ କରୁଥିବା ଆମେ ମାନବ ଜାତି ଅତି ନଗଣ୍ୟ ଓ ହେୟ ହେଲେ ସୁଦ୍ଧା ନିଜେ ସଭ୍ୟତାର ଚରମସୀମାରେ ଉପନୀତ ହୋଇ ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ ଯେ ପରସ୍ପର ମଧ୍ୟରେ ଲଢ଼େଇ କରି ଚାଲିଛୁ ଏକଥା

ଭାବିଲେ ସ୍ୱତଃ ମନରେ ନିରାଶା ଭାବ ଖେଳିଯାଏ । ମଣିଷ ଏତେ କ୍ଷୁଦ୍ର ହେଲେ ସୁଦ୍ଧା ନିଜର ବିଦ୍ୟା, ବୁଦ୍ଧି ବଳରେ ପୃଥିବୀ ବାହାର ମହାକାଶ ବିଷୟରେ କ୍ରମାଗତ ଗବେଷଣା ଚଳାଇ ଆସି ବହୁ ଅଜଣା ତଥ୍ୟ ଲୋକଲୋଚନକୁ ଆଣିପାରିଛି ।

ଏତେବଡ଼ ବିଶ୍ୱ ବ୍ରହ୍ମାଣ୍ଡରେ ସେ କଣ ଏକା ଜୀବନ୍ତ ବସ୍ତୁ ନାଁ - ଅନ୍ୟ କୌଣସି ଗ୍ରହ, ନକ୍ଷତ୍ରରେ ଜୀବନର ଅସ୍ତିତ୍ୱ ଅଛି ଏ ବିଷୟରେ ମଣିଷ କ୍ରମାଗତ ଭାବରେ ଗବେଷଣା କରି ଆସିଛି । ବିଶ୍ୱର ବିଶାଳତାକୁ ବେଖାତିର କରି ମଣିଷ ତାର ଧାର୍ଯ୍ୟ ଲକ୍ଷ୍ୟ ପଥରେ ପହଁଞ୍ଚିବାକୁ ଆପ୍ରାଣ ଚେଷ୍ଟା କରୁଛି । ଆମ ସୌର ମଣ୍ଡଳରେ ଥିବା ବିଭିନ୍ନ ଗ୍ରହ, ଉପ-ଗ୍ରହରେ ଜୀବନର ସତ୍ତା ଅଛି କି ? ଏହି ପ୍ରଶ୍ନର ସମାଧାନ ପାଇଁ ମଣିଷ ସୌର ମଣ୍ଡଳର ବିଭିନ୍ନ ଗ୍ରହକୁ ବିଭିନ୍ନ ସମୟରେ ଗବେଷଣା ଯାନ ପଠାଇ ତଥ୍ୟ ସଂଗ୍ରହ ପ୍ରଚେଷ୍ଟା ଚାଲୁ ରଖିଛି । ସୌର ଜଗତ ବ୍ୟତୀତ ମହାକାଶର ଅନ୍ୟ ଗ୍ରହ ନକ୍ଷତ୍ରରେ ଜୀବନର ସତ୍ତା ଅଛି ବୋଲି କେତେକ ନିର୍ଦ୍ଦିଷ୍ଟ ପ୍ରମାଣ ପାଇବା ପରେ ମଣିଷ ଏ ଦିଗରେ ଅଧିକ ଉତ୍ସାହୀ ହୋଇ ବିଶ୍ୱବ୍ରହ୍ମାଣ୍ଡର ନୂତନ ଜୀବନକୁ ଦେଖିବାକୁ ଆକୁଳ ହୋଇଛି । ଅନ୍ୟ ଗ୍ରହ, ନକ୍ଷତ୍ରରେ ଜୀବନର ସତ୍ତା ଅଛି ବୋଲି ବିଶ୍ୱର ବହୁ ବୈଜ୍ଞାନିକ ସେମାନଙ୍କର ମତ ଦେଇଛନ୍ତି ।

ଜର୍ମାନୀ ଦେଶର ବୈଜ୍ଞାନିକ ଡକ୍ଟର ଅଟୋହାନ୍ ୧୮୭୭ ମସି-ହାରେ ୟୁରୋପରେ ମହାକାଶରୁ ପଡ଼ିଥିବା ଏକ ଉଲ୍‌କାପିଣ୍ଡକୁ ପରୀକ୍ଷା କରି ଏଥିରେ ହାତ, ଗୋଡ଼ ଥିବା ଜୀବନ୍ତ ପ୍ରାଣୀର ଛାପ ଥିବା ଦେଖିଥିଲେ । ପୃଥିବୀର ବହୁ ସ୍ଥାନରେ ପଡ଼ିଥିବା ଉଲ୍‌କାପିଣ୍ଡକୁ ପରୀକ୍ଷା କରି ବହୁ ବୈଜ୍ଞାନିକ ଏଥିରେ ଜୀବନ୍ତ ପ୍ରାଣୀର ଦେହାବଶେଷର ସୂଚନା ଥିବା ପ୍ରକାଶ କରିଛନ୍ତି । ଉଲକାପିଣ୍ଡ ଗୁଡ଼ିକ ବିଭିନ୍ନ ଗ୍ରହ, ଉପଗ୍ରହ ଓ ଧୂମକେତୁର ଅଂଶ ବିଶେଷ ହୋଇଥିବାରୁ ଅନ୍ୟାନ୍ୟ ଗ୍ରହରେ ବା ନକ୍ଷତ୍ରରେ ଜୀବଜଗତ ଥିବା ସ୍ପଷ୍ଟ ହୋଇଉଠିଛି । ଏହା ବ୍ୟତୀତ ପୃଥିବୀର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ସମୟରେ ଉଡ଼ନ୍ତା ଥାଳିଆର

ଆର୍ବିର୍ଭାବ ହୋଇଛି ଏବଂ ଏହାକୁ ବହୁ ପୃଥିବୀ ବାସୀ ଦେଖିଛନ୍ତି । ଏହି ଥାଳିଆ ଅନ୍ୟ ଗ୍ରହରେ ଥିବା ମଣିଷ ପରି ବୁଦ୍ଧିମାନ ଜୀବ ପୃଥିବୀ ପୃଷ୍ଠକୁ ପ୍ରେରଣ କରନ୍ତି ବୋଲି ଅନେକ ବୈଜ୍ଞାନିକ ମତ ପ୍ରକାଶ କରନ୍ତି ।

ଗତ ମାର୍ଚ୍ଚ ମାସ ୧୯୮୮ରେ ଚୀନ ଦେଶରେ ବ୍ୟୋମଯାନରେ ଯାଉଥିବା ଯାତ୍ରୀମାନେ ଜାହାଜ ଆଗରେ ଅତି ଉଜ୍ଜ୍ୱଳ ଉଡ଼ିବୁଲୁଥିବା ଏକ ଉଡ଼ନ୍ତା ଥାଳିଆକୁ ଦେଖିଥିବାର ଖବର ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶ ପାଇଛି । ଏହି ଉଜ୍ଜ୍ୱଳ ବସ୍ତୁରୁ ଆସୁଥିବା ବେତାର ସଙ୍କେତକୁ ମଧ୍ୟ ବ୍ୟୋମଜାନର ପାଇଲଟ ସହଜରେ ଧରିପାରିଥିଲେ । ଏହା କିଛି ସମୟ ଉଡ଼ାଜାହାଜ ଆଗେ ଆଗେ ଉଡ଼ି ଉଡ଼ି ଯିବାପରେ କ୍ରମେ ଦୂରକୁ ଚାଲିଯାଇଥିଲା । ଏହି ଥାଳିଆ ବିଭିନ୍ନ ସମୟରେ ପୃଥିବୀର ବହୁ ଅଞ୍ଚଳରେ ଦେଖା ଦେଇଛି ଏବଂ ଏହାର ରହସ୍ୟ କିଣ ବର୍ତ୍ତମାନ ସୁଦ୍ଧା ମଧ୍ୟ ଅଜ୍ଞାତ ରହିଛି । ମାତ୍ର ଏହାର ଆର୍ବିର୍ଭାବ ଦ୍ୱାରା ମଣିଷ ଅନ୍ୟଗ୍ରହରେ ଜୀବନର ସତ୍ତା ନେଇ ବିଶେଷ ଅନୁସନ୍ଧିତ୍ସୁ ହୋଇ ପଡ଼ୁଛି ଏବଂ ଏ ଦିଗରେ ଗବେଷଣା ବିଶ୍ୱର ବିଭିନ୍ନ ସ୍ଥାନରେ ଚାଲୁ ରହିଛି ।

ବିଶ୍ୱ ବ୍ରହ୍ମାଣ୍ଡ ବିଷୟରେ ଆମେ ଆଲୋଚନା କଲାବେଳେ ସୌରମଣ୍ଡଳକୁ ଯଦି ହଜାରେ କୋଟି ଗୁଣ ଛୋଟ କରିଦେବା ତେବେ ସୂର୍ଯ୍ୟର ବ୍ୟାସ ୭ଇଞ୍ଚ ହେବ ଏବଂ ବୁଧ ସୂର୍ଯ୍ୟଠାରୁ ୭ଗଜ, ଶୁକ୍ର ୧୩ ଗଜ, ପୃଥିବୀ ୧୮ ଗଜ, ମଙ୍ଗଳ ୨୭ ଗଜ, ବୃହସ୍ପତି ୯୦ ଗଜ, ଶନି ୧୭୦ ଗଜ, ଇନ୍ଦ୍ର ୩୫୦ ଗଜ, ବରୁଣ ୫୪୦ ଗଜ ଓ ଯମ ୭୧୦ ଗଜ ବା ପ୍ରାୟ ସୂର୍ଯ୍ୟଠାରୁ ଅଧମାଇଲ ଦୂରରେ ରହିବ । ଠିକ୍ ଏହି ଅବସ୍ଥାରେ ସୂର୍ଯ୍ୟଠାରୁ ନିକଟତମ ତାରକାର ଦୂରତ୍ୱ ହେବ ଦୁଇହଜାର ମାଇଲ । ଖାଲି ଆଖିରେ ଆମେ ୨୫୦୦ ଯାଏ ତାରା ଦେଖିପାରୁଥିବା ବେଳେ ସବୁଠାରୁ ଉନ୍ନତ ଦୂରବିକ୍ଷଣ ଯନ୍ତ୍ର ସାହାଯ୍ୟରେ ମାତ୍ର ୧୦ କୋଟି ଯାଏ ତାରା ଦେଖିପାରୁ । ଆମେ ଦେଖୁଥିବା ତାରାମାନେ ସୂର୍ଯ୍ୟ ନିକଟରେ ଥିବାରୁ ଆମେ ଏହାକୁ ଦେଖିପାରୁ ମାତ୍ର କେତେ କୋଟି

ତାସ୍ ଯେ ମହାଶୂନ୍ୟରେ ଅଛନ୍ତି ତାହା କଳନା କରିବା ଅସମ୍ଭବ । ତେଣୁ ଏହିପରି ଏକ ବିରାଟ ମହାଶୂନ୍ୟ ଭିତରେ କ୍ଷୁଦ୍ରାତିକ୍ଷୁଦ୍ର ପୃଥିବୀର ମାନବ ଅନ୍ୟ ଗ୍ରହରେ ଜୀବନର ସତ୍ତା ଆବିଷ୍କାର କରିବା ଯେ କେତେ କଷ୍ଟକର ବ୍ୟାପାର,ତାହା ସହଜରେ କଳନା କରାଯାଇପାରେ । ତଥାପି ଏ ଦିଗରେ ମଣିଷ ତାର ଚେଷ୍ଟା ଅବ୍ୟାହତ ରଖିଛି ।

ପୃଥିବୀର ନିକଟତମ ଗ୍ରହ ବୁଧ, ଶୁକ୍ର, ମଙ୍ଗଳ ଗ୍ରହ ଉପରେ ବହୁଦିନରୁ ଗବେଷଣା ଚାଲିଛି ମାତ୍ର ଏଥିରେ ଫଳପ୍ରଦ ହୋଇନାହିଁ । ବୁଧ ଗ୍ରହରେ ଜୀବନର ସତ୍ତା ନେଇ ଗବେଷଣାରୁ ଜଣାଯାଇଛି ଯେ ଏହି ଗ୍ରହ ସୂର୍ଯ୍ୟର ନିକଟତମ ଗ୍ରହ ହୋଇଥିବାରୁ ଏହା ପୃଷ୍ଠର ଉତ୍ତାପ ୪୦୦° ସେଣ୍ଟିଗ୍ରେଡ଼ । ଏଭଳି ଅତ୍ୟଧିକ ଉତ୍ତାପରେ କୌଣସି ଜୀବନ ତିଷ୍ଠି ରହିବା ଅସମ୍ଭବ । ଜଳୀୟବାଷ୍ପ ଓ ଅମ୍ଳଜାନର ଅଭାବ ଓ ଅତ୍ୟଧିକ ଉତ୍ତାପ ଯୋଗୁ ଏହି ଗ୍ରହରେ ଜୀବନ ତିଷ୍ଠି ରହିଥିବା ଆଶା କରିବା ବୃଥା । ଏହା ପରେ ଶୁକ୍ର ଗ୍ରହ ଏକ ଶୁଷ୍କ ମରୁଭୂମି । ସବୁବେଳେ ଏଥିରେ ପରିବର୍ତ୍ତନ ଲାଗି ରହିଥାଏ । ଏହା ପୃଷ୍ଠର ଉତ୍ତାପ ବେଶୀ ଏଣୁ ଏଥିରେ ମଧ୍ୟ ଜୀବନ ଆଶା କରିବା ବୃଥା । ଏହା ପରେ ମଙ୍ଗଳ ଗ୍ରହ ଉପରେ ସମସ୍ତଙ୍କର ଆଖି ପଡ଼ିଛି । ଏହି ଗ୍ରହରେ ପୃଥିବୀ ଭଳି ବାୟୁମଣ୍ଡଳ ରହିଥିବାରୁ ଜୀବନର ସତ୍ତା ନେଇ ଆଶା ସୃଷ୍ଟି ହୋଇଛି ।

ମଙ୍ଗଳଗ୍ରହ ପୃଥିବୀଠାରୁ ବହୁ ଶ୍ରେଷ୍ଠ । ସୂର୍ଯ୍ୟଠାରୁ ଦୂରତା ଅନୁସାରେ ଏହାର ସ୍ଥିତି ଚତୁର୍ଥରେ ଏବଂ ଆକାରରେ ଏହା ସୌର ଜଗତର ୭ମ ଗ୍ରହ ଅଟେ । ଏହି ଗ୍ରହକୁ ପ୍ରାୟ ୩୦୦୦ ବର୍ଷ ପୂର୍ବେ ଜ୍ୟୋତିର୍ବିଦ୍‌ମାନେ ଆବିଷ୍କାର କରିଥିଲେ । ସୂର୍ଯ୍ୟ ଚାରିପାଖେ ବୁଲି ଆସିବାକୁ ମଙ୍ଗଳ ଗ୍ରହକୁ ୬୮୭ ଦିନ ଲାଗେ ଏବଂ ନିଜ କକ୍ଷପଥରେ ବୁଲି ଆସିବାକୁ ୩୭ ମିନିଟ ସମୟ ନିଏ । ଏହାର ବ୍ୟାସ ୬୦୨୫ କିଲୋମିଟର ଓ ପୃଥିବୀର ଓଜନର ୯ ଭାଗରୁ ଭାଗେ ଏହାର ଓଜନ । ପୃଥିବୀ ପରି ଏହାର ଫୋବସ ଓ ଡୀମସ ନାମକ ଦୁଇଟି ଚନ୍ଦ୍ର ଅଛି । ଏହି ଗ୍ରହରେ ଦିନ ଓ ରାତି ହୁଏ । ବାୟୁମଣ୍ଡଳ ମଧ୍ୟ ଏହା ପୃଷ୍ଠରେ

ରହିଛି । ତେଣୁ ଏହା ପୃଷ୍ଠରେ ଜୀବନ ରହିଥିବ ବୋଲି ବୈଜ୍ଞାନିକମାନେ ବିଶ୍ୱାସ କରନ୍ତି । ପୃଥିବୀ ସୂର୍ଯ୍ୟଠାରୁ ପାଉଥିବା ଆଲୋକର ପ୍ରାୟ ଅଧା ଆଲୋକ ଓ ଉତ୍ତାପ ଏହା ସୂର୍ଯ୍ୟଠାରୁ ପାଇଥାଏ । ବୃତ୍ତୁଚକ୍ର ମଧ୍ୟ ଏଥିରେ ଦେଖାଯାଏ । ଏହାର ମାଧ୍ୟାକର୍ଷଣ ଶକ୍ତି ପୃଥିବୀର ଠିକ୍ ଅଧା ହୋଇଥିବାରୁ ଏହା ପୃଷ୍ଠରେ ଗବେଷଣାଯାନ ଓହ୍ଲାଇବାରେ କୌଣସି ଅସୁବିଧା ହୁଏନାହିଁ । ଏହା ଉପରେ ଥିବା ବାୟୁମଣ୍ଡଳରେ ସବୁବେଳେ ଘନ କୁହୁଡ଼ି ଲାଗିରହିଥାଏ । ଏହି ଗ୍ରହର ରଙ୍ଗ ଲାଲ ହଳଦିଆ ମଧ୍ୟ ହୋଇଥାଏ ଏବଂ ରକ୍ତର ରଙ୍ଗପରି ଲାଲ ଦିଶୁଥିବାରୁ ଏହି ଗ୍ରହକୁ ପୂର୍ବକାଳରେ ଲୋକେ "ଯୁଦ୍ଧ କରୁଥିବା ଦେବତାଙ୍କ ଗ୍ରହ" ବୋଲି କହୁଥିଲେ ।

ଏହି ଗ୍ରହର ଗୋଟିଏ ମେରୁରେ ଏକ ମେରୁଛତା ବା ପୋଲାର କ୍ୟାପ ଅଛି । ଏହି ପୋଲାରକ୍ୟାପର ରଙ୍ଗ ଧଳା ; ବରଫର ଏକ ବହଳ ସ୍ତର ଏହା ଉପରେ ରହିଥାଏ । ଏହି ଗ୍ରହର ଉପରିଭାଗରେ ବଡ଼ ବଡ଼ ପାହାଡ଼, ପର୍ବତ, ଖାଲ, ଢିପ ରହିଛି । ଏହା ପୃଷ୍ଠରେ ଥିବା ପର୍ବତ ଶିଖରରେ ବରଫ ଜମା ହୋଇ ଧଳା ଦିଶୁଥାଏ ।

ଇଟାଲୀର ବୈଜ୍ଞାନିକ ଗିଓଭାନି ସାହିପାରେଲୀ ୧୮୭୭ ମସିହାରେ ମଙ୍ଗଳ ପୃଷ୍ଠରେ ଧଳା ଧଳା ସରୁ ସୂତାପରି ଦୃଶ୍ୟ ଦେଖି ଏହି ସରୁ ସୂତା ସବୁ ନଦୀ ଓ କେନାଲ ବୋଲି ମତ ଦେଇଥିଲେ । ଏହା ଉପରେ ବହୁ ବୈଜ୍ଞାନିକ ବିଭିନ୍ନ ପ୍ରକାର ମତ ପ୍ରକାଶ କରିଥିଲେ । ପରେ ଟେଲିସ୍କୋପ ସାହାଯ୍ୟରେ ଏହି ଧଳା ସରୁ ସୂତା ପରି ପଦାର୍ଥ କେତେକ ଶୁଷ୍କ, ବିରାଟ ଖାଲ ଓ ପାର୍ବତ୍ୟାଞ୍ଚଳର ସମଷ୍ଟି ବୋଲି ଜଣା ପଡ଼ିଥିଲା ।

୧୯୬୫ରେ ଆମେରିକା ମଙ୍ଗଳ ଗ୍ରହରେ ଗବେଷଣା ପାଇଁ ମାରିନାର-୪ ଯାନ ପ୍ରେରଣ କରିଥିଲା । ଏହା ଆଠମାସ ଗତ କରି ମଙ୍ଗଳଠାରୁ ୧୨ ହଜାର କିଲୋମିଟର ଦୂରରୁ ବହୁ ଫଟୋ ଉଠାଇ

ପୃଥିବୀକୁ ପଠାଇଥିଲା । ଏହା ପରେ ୧୯୬୯ରେ ମାରିନାର-୬, ମାରିନାର-୭ ସାହାଯ୍ୟରେ ମଧ୍ୟ ମଙ୍ଗଳ ଗ୍ରହର ବହୁ ଫଟୋ ଉଠାଯାଇଥିଲା । ଏହାପରେ ଆମେରିକା ମାରିନାର-୯ ସମେତ ଭାଇକିଙ୍ଗ-୧, ଓ ୨ ପ୍ରଭୃତି ମହାକାଶଯାନ ମଙ୍ଗଳ ଗ୍ରହ ବିଷୟରେ ଅଧିକ ଗବେଷଣା ପାଇଁ ପଠାଇଛି ।

ସେହିପରି ସୋଭିଏତ ରୁଷ ମଧ୍ୟ ମାର୍ସ ୨, ୩, ୪, ୫, ୬ ଓ ୭ ନାମକ ମହାକାଶଯାନ ମଙ୍ଗଳ ଗ୍ରହକୁ ଗବେଷଣା ପାଇଁ ପଠାଇଛି । ସାଟେଲାଇଟ ବା ଉପଗ୍ରହରୁ ମିଳୁଥିବା ତଥ୍ୟ ଅନୁସାରେ ମଙ୍ଗଳ ପୃଷ୍ଠରେ ସବୁବେଳେ ଧୂଳି ଝଡ଼ ଲାଗି ରହିଛି । ହଳଦିଆ ରଙ୍ଗର ଏହି ଧୂଳିକଣା ଝଡ଼ ହାଵା ଓ ବାୟୁମଣ୍ଡଳ ଥିବାରୁ ଏଠାରେ ଜୀବନ ଓ ବୃକ୍ଷରାଜି ଥିବାର ସମସ୍ତେ ଅନୁମାନ କରୁଥିଲେ ମାତ୍ର ଆଜିଯାଏ ବିଭିନ୍ନ ମହାକାଶ ଯାନରୁ ମିଳିଥିବା ତଥ୍ୟରୁ ସେଠାରେ ଜୀବନ ଥିବାର କୌଣସି ବିଶ୍ୱାସଯୋଗ୍ୟ ତଥ୍ୟ ମିଳିନାହିଁ । ମଙ୍ଗଳ ଗ୍ରହରେ ବିରାଟ ପାହାଡ଼, ପର୍ବତ ଓ ଆବିଷ୍କୃତ ହୋଇଥିବା ପ୍ରାୟ ୧୦୦ କିଲୋମିଟର ପ୍ରସ୍ଥ ଓ କେତେ କିଲୋମିଟର ଗଭୀରର "ଭ୍ୟାଲି ଅଫ୍ ମାରିନରର୍ସ" **Valley of Mariners** ଏବଂ **Nix Olympica** ନାମକ ତୁଷାରାଚ୍ଛନ୍ନ ଆଗ୍ନେୟଗିରି ଦେଖିବାକୁ ମିଳେ । ଉପରୋକ୍ତ ଉପତ୍ୟକା ଓ ଲମ୍ବା ଲମ୍ବା ଖାଲକୁ ଦେଖି ବୈଜ୍ଞାନିକମାନେ ହିନେ ମଙ୍ଗଳ ପୃଷ୍ଠରେ ଜନବସତି ଓ ନଦୀ ନାଳ ଥିବାର ଅନୁମାନ କରୁଥିଲେ । ବୈଜ୍ଞାନିକ ଡେଭିଡୋଭ ଏବେ ମଧ୍ୟ ମଙ୍ଗଳ ପୃଷ୍ଠରେ ଜଳ ଥିବାର ମତ ଦିଅନ୍ତି ।

ଏହି ଗ୍ରହ ପୃଷ୍ଠରେ ସର୍ବଦା ଥଣ୍ଡା ଲାଗି ରହିଥାଏ ଏବଂ ମେରୁ ଅଞ୍ଚଳର ଉତ୍ତାପ ୦° C ହୋଇଥାଏ । ଗରମ ଦିନରେ ସର୍ବାଧିକ ଉତ୍ତାପ ୧୫-୨୦° C ହୋଇଥାଏ । ମାତ୍ର ରାତିରେ ଉତ୍ତାପ —୧୦୦° ସେଣ୍ଟିଗ୍ରେଡ଼କୁ ଖସି ଆସିଥାଏ । ମଙ୍ଗଳ ଗ୍ରହର ବାୟୁମଣ୍ଡଳ ମୁଖ୍ୟତଃ ଅଙ୍ଗାରକାମ୍ଳ ଗ୍ୟାସ ପୂର୍ଣ୍ଣ । ପ୍ରାୟ ୦ ଦଶମିକ ୧ ଭାଗ ଅମ୍ଳଜାନ ଏହାର ବାୟୁମଣ୍ଡଳରେ ରହିଛି । ବର୍ତ୍ତମାନର ଅମ୍ଳଜାନର ଉପସ୍ଥିତିକୁ ଲକ୍ଷ୍ୟ

କର ବୈଜ୍ଞାନିକମାନେ ଏହା ପୃଷ୍ଠରେ ଜୀବନ ଥିବାର ଅନୁମାନ କରନ୍ତି । ଏହା ବ୍ୟତୀତ ଏହି ଗ୍ରହର ବାୟୁମଣ୍ଡଳରେ ୨ ଦଶମିକ ୭ ଭାଗ ଯବକ୍ଷାରଜାନ, ୧ ଦଶମିକ ୬ ଭାଗ ଆରଗନ ଗ୍ୟାସ ରହିଛି । ବାୟୁର ଚାପ ପାହାଡ଼ ଉପରେ ଓ ସମତଳ ଭୂମିରେ ଅଲଗା ହୋଇଥାଏ । ପୃଥିବୀ ଗୁରୁପାଖରେ ଥିବା ବିକରଣ ବଳୟ ପରି ଏହାର ଗ୍ରହପାଖରେ ବିକରଣ ବଳୟ ନାହିଁ । ପୃଥିବୀର ପ୍ରାୟ ୫୦୦ ଗୁଣରୁ କମ୍ ଶକ୍ତିଶାଳୀ ଏକ ଚୁମ୍ବକୀୟ ବଳୟ ମଙ୍ଗଳ ଗ୍ରହରେ ରହିଛି ।

ମଙ୍ଗଳ ଗ୍ରହର ପୃଥିବୀ ସହିତ କେତେକ ସମତା ଥିବାରୁ, ମୁଖ୍ୟତଃ ଏହା ପୃଷ୍ଠରେ ବାୟୁମଣ୍ଡଳ ଥିବାରୁ ଜୀବନର ସତ୍ତା ଏହି ଗ୍ରହରେ ଅଛି ବୋଲି ବହୁ କାଳରୁ ପୃଥିବୀବାସୀଙ୍କ ମଧ୍ୟରେ ନାନା ଆଲୋଚନା, ତର୍କ ବିତର୍କ, ପରୀକ୍ଷା ନିରୀକ୍ଷା ଚାଲିଆସିଛି । ପୃଥିବୀ ପୃଷ୍ଠରେ ପ୍ରୋଟିନ ଓ ହାଇଡ୍ରୋକାର୍ବନ ମାଧ୍ୟମରେ ଜୀବନର ସୃଷ୍ଟି ହେବା ପରି ଏହା ପୃଷ୍ଠରେ କପରି ଜୀବନର ସୃଷ୍ଟି ହୋଇପାରିଥିବ ସେ ସମ୍ପର୍କରେ କୌଣସି ସଠିକ ତଥ୍ୟ ନାହିଁ । ଏତେ କମ ଉତ୍ତାପ ଓ ବାୟୁମଣ୍ଡଳରେ କେବଳ ବ୍ୟାକ୍ଟେରିଆ ଓ କ୍ଷୁଦ୍ର ଉଦ୍ଭିଦ ବଞ୍ଚିରହିବାର ଆଶା ଥିଲେ ମଧ୍ୟ ସେମାନଙ୍କର କୌଣସି ଚିହ୍ନ ଆଜଯାଏ ଦେଖାଯାଇନାହିଁ ।

୧୯୭୬ ମସିହାରେ ମଙ୍ଗଳଗ୍ରହକୁ ଯାଇଥିବା ମହାକାଶଯାନ ଭାଇକିଙ୍ଗ—୧, ଓ ୨ ସେଠାର ମୃତ୍ତିକା ଯନ୍ତ୍ର ମଣିଷ ବା ରୋବର୍ଟ ଦ୍ୱାରା ପରୀକ୍ଷା କରି ମଙ୍ଗଳ ପୃଷ୍ଠର ମୃତ୍ତିକାରେ ପୋଟାସିୟମ ବ୍ୟତୀତ ବାଲି (ସିଲିକନ ଡାଇଅକ୍ସାଇଡ଼) ଶତକଡ଼ା ୪୫ ଭାଗ, ଲୁହା ଆଲମୁନିୟମ, ମ୍ୟାଗ୍ନେସିୟମ, କ୍ୟାଲସିୟମ ଏବଂ ଟିକିଏ ସଲଫର ଥିବାର ଜଣାଯାଇଥିଲା । ଏହି ପରୀକ୍ଷାରୁ କୌଣସି କ୍ଷୁଦ୍ର ଜୀବ ବା ଏହାର ମୃତ ଶରୀର କିମ୍ବା ଜୀବନ ସମ୍ପର୍କରେ କୌଣସି ସୂତ୍ର ମିଳିନାହିଁ । ତା ସତ୍ତ୍ୱେ ମଧ୍ୟ ଏହା ପୃଷ୍ଠରୁ ଅଧିକ କିଛି ଆଶା କରି ମଙ୍ଗଳଗ୍ରହ ବିଷୟରେ ପୃଥିବୀବାସୀ ଗବେଷଣା ରତ ଅଛନ୍ତି । ବହୁ ବୈଜ୍ଞାନିକ ମତ ଦେଇଛନ୍ତି ଯେ ମଙ୍ଗଳ ପୃଷ୍ଠରେ ଚାଲନ୍ତା ପ୍ରାଣୀ, ବଡ଼ ବୃକ୍ଷ ବା ଜୀବନ ଆଶା

କରିବା ବୃଥା । ଯଦି କୌଣସି ଉଦ୍ଭିଦର ସ୍ଥିତି ଏହା ପୃଷ୍ଠରେ ଥାଏ ତେବେ ତାହା ହୁଏତ ମସ ବା ଲାଇକେନ ଶ୍ରେଣୀର ଉଦ୍ଭିଦ ହୋଇ-ପାରନ୍ତି । ବିଭିନ୍ନ ସୂତ୍ରରୁ ଗବେଷଣା କରି ରୁଷ ବୈଜ୍ଞାନିକ ଡକ୍ଟର ଆଇ: ଏସ: ସାକଲୋଭସ୍କି ମତ ଦେଇଛନ୍ତି ଯେ ପ୍ରାୟ ୩୦ ଲକ୍ଷ ବର୍ଷ ପୂର୍ବେ ଏହା ପୃଷ୍ଠରେ ଉନ୍ନତ, ବୁଦ୍ଧିମାନ ଜୀବ ବାସ କରୁଥିଲେ ।

ସୌର ଜଗତର ବିଭିନ୍ନ ଗ୍ରହ, ଉପଗ୍ରହରେ ଜୀବନର ସତ୍ତା ମଣିଷ ମନରେ ନିରାଶ ଦେଇଥିଲେ ମଧ୍ୟ ମଣିଷ ଏ ପଥରୁ ଓହରି ଯାଇ-ନାହିଁ । ମହାଶୂନ୍ୟର ଅନ୍ୟ ଗ୍ରହ ନକ୍ଷତ୍ରରେ ଜୀବନର ସତ୍ତା ନେଇ ଏବେ ମଧ୍ୟ ପୃଥିବୀବାସୀ ଗବେଷଣାରତ ।

ସାଧାରଣତଃ ନକ୍ଷତ୍ରରେ ଜୀବନ ତିଷ୍ଠି ରହିବା ସମ୍ଭବ ନୁହେଁ କାରଣ ଏହା ପୃଷ୍ଠରେ ଉତ୍ତାପ ଏତେ ଅଧିକ ଯେ କୌଣସି ପ୍ରାଣୀ ଏଥିରେ ବଞ୍ଚି ରହିପାରିବେ ନାହିଁ । ତେଣୁ ଜୀବନର ସୂତ୍ର ଖୋଜିବା ପାଇଁ ଆମକୁ କେବଳି ମହାକାଶର ଗ୍ରହ, ଉପଗ୍ରହମାନଙ୍କ ଉପରେ ହିଁ ନିର୍ଭର କରିବାକୁ ହେବ । ଆଜିଯାଏ ସୌର ଜଗତ ବାହାରେ ମହା-ଶୂନ୍ୟରେ ଜୀବନ ବିଷୟରେ ବହୁ ଗବେଷଣା ହୋଇଛି ।

କେତେକ ବୈଜ୍ଞାନିକ ମତ ଦେଇଛନ୍ତି ଯେ ପୃଥିବୀଠାରୁ ୧୬ ଆଲୋକବର୍ଷ ଦୂରରେ ଥିବା ୫୯ଟି ନକ୍ଷତ୍ରଙ୍କ ମଧ୍ୟରୁ ଦୁଇଟି ନକ୍ଷତ୍ର ଯଥା ଏପିସିଲନ ଇରିଡାନି ଓ ଟାଉସିଟିରେ ଉନ୍ନତ ଜୀବନ ରହିଛି । ଏହା ଉପରେ ଅଧିକ ଗବେଷଣା କାର୍ଯ୍ୟ ଚାଲୁ ରହିଛି । ରେଡ଼ିଓ ଟେଲିସ୍କୋପ ସାହାଯ୍ୟରେ ବେତାର ବାର୍ତ୍ତାମାନ ପୃଥିବୀ ବାହାରକୁ ପ୍ରେରଣ କରାଯାଉଛି । ଯଦି ପୃଥିବୀ ବାହାରେ କୌଣସିଠାରେ ବୁଦ୍ଧିମାନ ଜୀବ ଥାଆନ୍ତି ତେବେ ସେମାନେ ଏହି ବାର୍ତ୍ତାକୁ ସହଜରେ ଗ୍ରହଣ କରି ପୃଥିବୀ ଆଡ଼କୁ ଅଗ୍ରସର ହେବେ କିମ୍ବା ସେମାନଙ୍କର ଉପସ୍ଥିତି ବିଷୟରେ ଅନୁରୂପ ବାର୍ତ୍ତା ପ୍ରେରଣ କରି ପୃଥିବୀବାସୀଙ୍କୁ ସେମାନଙ୍କ ବିଷୟରେ ହୁଏତ ଜଣାଇଦେଇ ପାରିବେ ।

୧୯୨୧ ମସିହାରେ ମାର୍କୋନି ତଥା ୧୯୨୪ ମସିହାରେ ବୈଜ୍ଞାନିକ ଜେନ୍କିନ୍ସନ୍ ସେମାନଙ୍କ ବେତାର ଯନ୍ତ୍ରରେ ବାହାରୁ ଆସୁଥିବା କେତେକ ବେତାର ବାର୍ତ୍ତା ପାଇ ପୃଥିବୀ ବାହାରର କୌଣସି ସଭ୍ୟ ଗ୍ରହ ଉପଗ୍ରହରୁ ଏହି ବାର୍ତ୍ତା ଆସିଥାଇପାରେ ବୋଲି ମତପ୍ରକାଶ କରିଥିଲେ । ବହୁ ଦିନରୁ ପୃଥିବୀ ଆକାଶରେ ଦେଖା ଦେଉଥିବା ଉଡ଼ନ୍ତା ଥାଳିଆ ଆଜିଯାଏ ମଧ୍ୟ ରହସ୍ୟାବୃତ୍ତ ହୋଇ ରହିଛି ।

ପୃଥିବୀ ବାହାରର ଜୀବନ ବିଷୟରେ ଆଜିଯାଏ କୌଣସି ସଠିକ ତଥ୍ୟ ମଣିଷର ହସ୍ତଗତ ହୋଇନାହିଁ ମାତ୍ର ଏଥିରେ ହତୋତ୍ସାହିତ ନ ହୋଇ ପୃଥିବୀବାସୀ ବୈଜ୍ଞାନିକଗଣ ଦିନେ ନା ଦିନେ ଏହି କାର୍ଯ୍ୟରେ ସଫଳ ହେବାର ଆଶା ନେଇ ଗବେଷଣା କାର୍ଯ୍ୟ ଚାଲୁ ରଖିଛନ୍ତି । ସେମାନଙ୍କର ସଫଳତା ବିଫଳତା ଭବିଷ୍ୟତ କହିବ ।



# ଭବିଷ୍ୟତର ଆତଙ୍କ

ଆମ ଅତୀତର ବହୁ ମହାପୁରୁଷ ବିଶ୍ୱ ସୃଷ୍ଟିର ପ୍ରଳୟ ବା ବିଲୋପ ବିଷୟରେ ବହୁ ମତାମତ ଦେଇଛନ୍ତି । ଓଡ଼ିଶାର ସନ୍ଥ ପଞ୍ଚ-ସଖାଙ୍କ ମଧ୍ୟରୁ ଅନ୍ୟତମ ସନ୍ଥ ଅଚ୍ୟୁତାନନ୍ଦ ଦାସ ଓ ହାଡ଼ିଦାସ ସେମାନଙ୍କର ଭବିଷ୍ୟତବାଣୀ "ମାଳିକା" ମାଧ୍ୟମରେ ଶୁଣାଇ କହି ଯାଇଛନ୍ତି ଯେ ବିଶ୍ୱରେ ଯେତେବେଳେ ଅଧର୍ମ, ଅତ୍ୟାଚାର, ଅନୀତି, ଦୁର୍ନୀତି, ବ୍ୟଭିଚାର ବଢ଼ିଯିବ ସେତେବେଳେ ସମଗ୍ର ବିଶ୍ୱ ପୃଷ୍ଠରେ ପ୍ରଳୟ ଦେଖାଦେଇ ମାନବ ସଭ୍ୟତା ଲୋପ ପାଇ ସତ୍ୟଯୁଗ ଆରମ୍ଭ ହେବ । ମହାପ୍ରଳୟ ଦ୍ୱାରା ପାପୀମାନେ ସମୂଳେ ନାଶ ଯିବେ । ଅତୀତର ଏହିସବୁ ମହାପୁରୁଷମାନଙ୍କର ମତାମତ କଣ ମିଥ୍ୟା ? ବର୍ତ୍ତମାନ ପୃଥିବୀ ପୃଷ୍ଠରେ ଅଧର୍ମ, ଅନ୍ୟାୟର ଯେପରି ଭାବରେ ବଢ଼ିଲାଣି ଏବଂ ଆଣବିକ ଅସ୍ତ୍ର ଧରି ଗର୍ବୀ ମାନବ କାହାକୁ ଖାତିର ନକରି ବିଶ୍ୱର ସେ ସର୍ବେସର୍ବା ଭାବି ଯେପରି ବେପରବାୟ ଭାବରେ ସବୁ ଅନ୍ୟାୟର, ଅତ୍ୟାଚାର, ଅଧର୍ମ କରି ଚାଲିଛି ଏବଂ ପ୍ରକୃତିର ଭାରସାମ୍ୟ ରକ୍ଷା ନକରି ପ୍ରକୃତି ଉପରେ ଯେକୌଣସି ବ୍ୟଭିଚାର କରିବାକୁ ପଛାଉ ନାହିଁ, ସେ ସବୁ ବିଷୟ ଦେଖିଲେ ବା ଆଲୋଚନା କଲେ ପୃଥିବୀର ଧ୍ୱଂସ ବା ପ୍ରଳୟ ସମୟ ଯେ କ୍ରମେ ନିକଟରୁ ନିକଟତର ହେଉଛି ତାହା ଯେ କେହି ହୃଦୟଙ୍ଗମ କରିପାରିବ ।

ବର୍ତ୍ତମାନର ପ୍ରକୃତି ଉପରେ ଅତ୍ୟାଚାର ପ୍ରକ୍ରିୟା ଯଦି ଚାଲୁ ରୁହେ ତେବେ ନିକଟ ଭବିଷ୍ୟତରେ ଏପରି ଦିନ ଆସିବ ଯେତେବେଳେ କୌଣସି ଝଡ଼, ବର୍ଷା ବା ତୋଫାନ ନ ହୋଇ ମଧ୍ୟ ମହାସମୁଦ୍ରର ଜଳରାଶି ଉପକୂଳ ଆଡ଼କୁ ଆପଣା ଛାଏଁ ମାଡ଼ି ଆସିବ ଏବଂ ପୃଥିବୀ ପୃଷ୍ଠର ଉପକୂଳ ଅଞ୍ଚଳରେ ଅବସ୍ଥିତ ବହୁ ବିଭବଶାଳୀ ସହରକୁ ବୁଡ଼ାଇ ଦେଇ ସମୁଦ୍ର ଗର୍ଭକୁ ନେଇଯିବ । ପୃଥିବୀ ପୃଷ୍ଠର ସ୍ଥଳଭାଗର

ଆୟତନ କମିଯିବ ଓ ଜଳଭାଗର ଆୟତନ ବଢ଼ିଯିବ । ବହୁ ଅଞ୍ଚଳର ଶ୍ୟାମଳ ଶସ୍ୟକ୍ଷେତ୍ର ବିରାଟ ମରୁଭୂମିରେ ପରିଣତ ହେବ । ପୃଥିବୀ ପୃଷ୍ଠର ସବୁ ମରୁଭୂମି ସେମାନଙ୍କର କାୟା ବଢ଼ାଇ ସ୍ଥଳଭାଗର ଏକ ବିସ୍ତୀର୍ଣ୍ଣ ଅଂଶକୁ ଅନୁର୍ବର ବାଲୁକାମୟ କରିଦେବ । ଏବେ କ୍ରମାଗତ ଭାବରେ ମୃତ୍ତିକା କ୍ଷୟ ଘଟି ଆମ ଭାରତର ବହୁ ଅଞ୍ଚଳ ଓ ଓଡ଼ିଶାର ମଧ୍ୟ କେତେକ ଅଞ୍ଚଳରେ କିପରି କ୍ରମାଗତ ସମୁଦ୍ର ସ୍ଥଳଭାଗ ଆଡ଼କୁ ମାଡ଼ି ଆସିଲାଣି ସେ ବିଷୟରେ ଏକ ଉଦାହରଣ ଦେଲେ ସହଜରେ ଜଣାପଡ଼ିବ ।

୧୯୮୨ ମସିହାରେ ଓଡ଼ିଶାରେ ସଂଘଟିତ ହୋଇଥିବା ବାତ୍ୟା ଓ ପରେ ପରେ ବନ୍ୟା ହୋଇଯିବା ପରେ ଏହି ଲେଖକଙ୍କୁ କଟକ ଜିଲ୍ଲାର ସମୁଦ୍ର ଉପକୂଳବର୍ତ୍ତୀ ରାଜନଗର ବ୍ଲକର ଦୁର୍ଗମ ସମୁଦ୍ରକୁ ସ୍ପର୍ଶ କରିଥିବା ସାତଭାୟା ଗ୍ରାମକୁ ଯିବାର ସୁଯୋଗ ମିଳିଥିଲା । ଏହି ଗ୍ରାମ ଓ ନିକଟସ୍ଥ କାନପୁର ଗ୍ରାମରୁ ୧୯୬୭ରେ ହୋଇଥିବା ପ୍ରବଳ ବାତ୍ୟାରେ ୭୫୨ ଜଣ ଲୋକ ସମୁଦ୍ର ମଧ୍ୟକୁ ଭାସିଯାଇ ପ୍ରାଣ ହରାଇ-ଥିଲେ । ଉଚ୍ଚ ବାଲିକୁଦ ଉପରେ ଥିବା ଉକ୍ତ ଗ୍ରାମକୁ ସେତେବେଳେ ସମୁଦ୍ର ଚାରିଆଡ଼ୁ ଘେରିରହିଥିଲା । ଜୁଆର ଆସିଲେ ଏହି ଗ୍ରାମ ଏକ-ପ୍ରକାର ସ୍ଥଳଭାଗରୁ ବିଚ୍ଛିନ୍ନ ହୋଇ ଦ୍ୱୀପ ପରି ଦେଖାଯାଏ । କେତେ-ବେଳେ ଯେ ଏହି ଗ୍ରାମ ସମୁଦ୍ର ମଧ୍ୟରେ ଲୀନ ହୋଇଯିବ ତାହା କହି ହେଉନାହିଁ ।

ଗ୍ରାମରେ ଥିବା ବହୁ ବୁଢ଼ାବୁଢ଼ୀ ଲୋକେ ଏହି ଲେଖକ ଆଗରେ ପ୍ରକାଶ କରିଥିଲେ ଯେ ପ୍ରାୟ ୭।୮ ବର୍ଷ ମଧ୍ୟରେ ସମୁଦ୍ର କୂଳ ଖାଇ ଘଞ୍ଚ ଜଙ୍ଗଲ ସମ୍ପଦକୁ ନଷ୍ଟ କରି ତାଙ୍କ ଗ୍ରାମ ପାଏ ମାଡ଼ି ଆସିଛି । ସେମାନଙ୍କର ପିଲାଦିନେ ସେମାନେ ଗ୍ରାମରୁ ବାହାରି ଦରିଆ କୂଳକୁ (ସମୁଦ୍ର କୂଳ) ଯିବାକୁ ସକାଳୁ ବାହାରିଲେ ମଧ୍ୟାହ୍ନରେ ଯାଇ ପହଁଞ୍ଚୁଥିଲେ ମାତ୍ର ଏବେ ଏତେ ଶୀଘ୍ର ଯେ ସମୁଦ୍ର ମାଡ଼ି ଆସିବ ବୋଲି ସେମାନେ କେବେ କଳ୍ପନା ମଧ୍ୟ କରୁନଥିଲେ । କନିକା ରାଜା ସାହେବ-

ଙ୍କର ଏକ ଗ୍ରୀଷ୍ମ ବିନୋଦନ ବିଗ୍ରହ କୋଠରୀ ତାଙ୍କ ଗ୍ରାମଠାରୁ ବହୁ ଦୂରରେ ଥିଲା ଯାହାକି ଏବେ ସମୁଦ୍ର ବକ୍ଷରେ ଲୀନ ହୋଇଗଲାଣି । ସେହି ସୁନ୍ଦର ପ୍ରାସାଦ ସମେତ ମାଇଲ ମାଇଲ ବ୍ୟାପୀ ଜଙ୍ଗଲକୁ ଦରିଆ ସବୁ ଖାଇଗଲା ।  ବୋଲି ସେମାନେ ଦୀର୍ଘ ନିଃଶ୍ୱାସ ଛାଡ଼ି କହି-ଚାଲିଥିଲେ । ଆକାଶରେ ଖଣ୍ଡେ ବାଦଲ ବା ମେଘ ପବନ ଦେଖିଲେ ସେମାନେ ଜୀବନକୁ ପାଣି ଛଡ଼ାଇ ଆତଙ୍କିତ ଅବସ୍ଥାରେ ରହୁଛନ୍ତି । ମାତ୍ର ଏତେ ଶୀଘ୍ର ମୃତ୍ତିକା କ୍ଷୟ ହୋଇ ସମୁଦ୍ର ସ୍ଥଳଭାଗ ଆଡ଼କୁ କାହିଁକି ମାଡ଼ି ଆସିଲା ସେ ବିଷୟରେ କୌଣସି ଗବେଷଣା ହୋଇଛି କି ? ସେହି-ପରି କଟକଜିଲ୍ଲା ତଥା ଉପକୂଳ ଅଞ୍ଚଳରେ ଥିବା ଘଞ୍ଚ ଜଙ୍ଗଲ କ୍ରମଶଃ ଧ୍ୱଂସ ହୋଇଗଲାଣି ଏବଂ ଏହାଫଳରେ ମୃତ୍ତିକା କ୍ଷୟ ଘଟିବାରେ ଲାଗିଛି । ଏହାର ପ୍ରତିରୋଧ କରିବାକୁ ବର୍ତ୍ତମାନଠାରୁ ଉଦ୍ୟମ ହେବା ଆବଶ୍ୟକ ।

ଏବେ ଦେଖାଯାଉଛି ଯେ ପୃଥିବୀର ବାୟୁମଣ୍ଡଳ କ୍ରମାଗତ ଭାବରେ ଉତ୍ତପ୍ତ ହେବାରେ ଲାଗିଛି । ବୈଜ୍ଞାନିକ ମାନେ ଗବେଷଣା କରି ଜାଣିପାରିଛନ୍ତି ଯେ ପ୍ରାୟ ୧୮ହଜାର ବର୍ଷ ପୂର୍ବ ହିମଯୁଗ ପରଠାରୁ ପୃଥିବୀର ଉତ୍ତାପ କ୍ରମେ ବଢ଼ିବାରେ ଲାଗିଛି । ଏହାର ପୃଷ୍ଠ କ୍ରମଶଃ ଉତ୍ତପ୍ତ ହେବା ଦ୍ୱାରା ଏହା ପୃଷ୍ଠରେ ଜୀବଜନ୍ତୁ, ଗଛଲତା ସବୁ ସୃଷ୍ଟି ହୋଇ ବଞ୍ଚିରହି ପୃଥିବୀକୁ ସୁନ୍ଦର କରିପାରିଛନ୍ତି, ମାତ୍ର ଏହି କେତେବର୍ଷ ହେଲା ପୃଥିବୀ ପୃଷ୍ଠ କ୍ରମାଗତ ଭାବେ ଅଧିକରୁ ଅଧିକ ଉତ୍ତପ୍ତ ହେବାରେ ଲାଗିଛି ଏବଂ ଜୀବଜନ୍ତୁ ତଥା ଗଛଲତା ବଞ୍ଚି ରହିବା ପାଇଁ ଯେତିକି ଉତ୍ତାପ ଦରକାର କ୍ରମେ ତାଠାରୁ ଅଧିକ ଉତ୍ତପ୍ତ ହେବା ପରି ଅବସ୍ଥା ଏବେଠାରୁ ଦେଖାଗଲାଣି । ପୃଥିବୀ ପୃଷ୍ଠରେ ଏହି ଅତ୍ୟଧିକ ଉତ୍ତପ୍ତ ପ୍ରକ୍ରିୟା ଯଦି କ୍ରମାଗତ ଚାଲୁରହେ ତେବେ ଏହା ମଧ୍ୟ ଦିନେ ପୃଥିବୀରେ ପ୍ରଳୟ ସୃଷ୍ଟି କରି ପୃଥିବୀର ଧ୍ୱଂସର କାରଣ ହେବ ।

ବୈଜ୍ଞାନିକମାନେ ପୃଥିବୀର ଏହି କ୍ରମାଗତ ଉତ୍ତପ୍ତ ପ୍ରକ୍ରିୟାକୁ "ଗ୍ରୀନ୍ ହାଉସ ଇଫେକ୍ଟ" ବୋଲି କହୁଛନ୍ତି । ପୃଥିବୀ ପୃଷ୍ଠର ବାୟୁ-

ମଣ୍ଡଳରେ ବହୁ ପ୍ରକାର ରସାୟନିକ ପରିବର୍ତ୍ତନ ଫଳରେ ଏହି ବାୟୁ-ମଣ୍ଡଳ କ୍ରମେ କ୍ରମେ ଉତ୍ତପ୍ତ ହେବାରେ ଲାଗିଛି । ଏହି ବିଷୟରେ ନିଜର ମତ ଦେଇ ଆମେରିକାର ଜାତୀୟ ବାୟୁମଣ୍ଡଳ ଗବେଷଣାଗାରର ବୈଜ୍ଞାନିକ ଷ୍ଟିଫେନ ସ୍ନିଚନାଡ଼ର କହନ୍ତି—

**"Human are altering the earths surface and Changing the atmosphere at such a rate that we have become a competitor with natural forces that maintain our climate."** ମଣିଷ ପୃଥିବୀର ବାୟୁମଣ୍ଡଳକୁ ଓଲଟ ପାଲଟ କରିବା ସଙ୍ଗେ ସଙ୍ଗେ ଏହାକୁ ଏତେ ଶୀଘ୍ର ନିଜ ଇଚ୍ଛା ଅନୁସାରେ ପରିବର୍ତ୍ତନ କରିବାରେ ଲାଗିଛି ଯେ ବର୍ତ୍ତମାନ ମଣିଷକୁ ହିଁ ପୃଥିବୀର ବାୟୁମଣ୍ଡଳ ଓ ଜଳବାୟୁକୁ ସ୍ଥିର ଅବସ୍ଥାରେ ରଖିଥିବା ପ୍ରାକୃତିକ ବଳ ସହିତ ପ୍ରତିଯୋଗିତା କରିବା ପରି ମନେ ହେଉଛି ।

ଆମ ପୃଥିବୀକୁ ଯଦି ଏକ କମଳା ବୋଲି ଆମେ ଭାବିବା ତେବେ ଏହାର ଚୋପା ହିଁ ବାୟୁମଣ୍ଡଳ । ଏହାର ଚୋପାର ତଳଭାଗରେ ଥିବା ପତଳା ଧଳା ପରଦା ହିଁ ଟ୍ରୋପୋସ୍ଫିୟର । ଏହାର ଲମ୍ବ ପୃଥିବୀ ପୃଷ୍ଠରୁ ପ୍ରାୟ ୧୦ ମାଇଲ ଉପରଯାଏ ବ୍ୟାପୀ ରହିଥାଏ । ଏହିଠାରେ ହିଁ ପୃଥିବୀ ପୃଷ୍ଠର ବାୟୁମଣ୍ଡଳ ଓ ପାଣିପାଗ ନିୟନ୍ତ୍ରିତ ହୋଇଥାଏ । ସୂର୍ଯ୍ୟରଶ୍ମି ସିଧା ସୂର୍ଯ୍ୟରୁ ଆସି ପୃଥିବୀ ପୃଷ୍ଠରେ ପଡ଼େ ଏବଂ ପୃଥିବୀ ପୃଷ୍ଠ ଆବଶ୍ୟକ ଉତ୍ତାପ ଗ୍ରହଣ କରିବା ପରେ ଏହା ବିକିରିତ ହୋଇ ପୁଣି ବାୟୁମଣ୍ଡଳକୁ ଫେରିଯାଏ । ମାତ୍ର ବାୟୁମଣ୍ଡଳରେ ଥିବା ଅଙ୍ଗାର-କାମ୍ଳ ଓ ଅନ୍ୟାନ୍ୟ କେତେକ ବାଷ୍ପ ବିକିରିତ ହୋଇ ଫେରିଯାଉଥିବା, ଏହି ସୂର୍ଯ୍ୟରଶ୍ମିକୁ ନିଜେ ଧରିରଖନ୍ତି ଏବଂ ପରିଣାମରେ ପୃଥିବୀ ବାୟୁ-ମଣ୍ଡଳର ଉତ୍ତାପକୁ ବଢ଼ାଇ ଦିଅନ୍ତି । ସେଥିପାଇଁ ଅଙ୍ଗାରକାମ୍ଳ ବାଷ୍ପକୁ ଏକ ସବୁଜ କାଚଘର ସହିତ ତୁଳନା କରାଯାଇଥାଏ । ପୃଥିବୀ ପୃଷ୍ଠ ଏକ ସବୁଜ କାଚଘର ହେଲେ ଏହି ଅଙ୍ଗାରକାମ୍ଳ ବାଷ୍ପ ଏହି ଘରର ବଢ଼ି ରହିଥିବା ଗୃହ କାଚକାନ୍ଥ ଯାହାକି ଉତ୍ତାପକୁ ଧରିରଖେ ।

ବର୍ତ୍ତମାନ ପୃଥିବୀ ପୃଷ୍ଠରେ କୋଇଲା ଅତ୍ୟଧିକ ଜଳିବାଦ୍ୱାରା ଓ ବିଭିନ୍ନ କଳକାରଖାନାରୁ ନିର୍ଗତ ଧୂଆଁ ଦ୍ୱାରା ଅଙ୍ଗାରକାମ୍ଳ ବାଷ୍ପର ପରିମାଣ ବାୟୁମଣ୍ଡଳରେ କ୍ରମାଗତ ଭାବେ ବଢ଼ିବାରେ ଲାଗିଛି । ବର୍ତ୍ତମାନ ଯେଉଁ ପରିମାଣରେ ଅଙ୍ଗାରକାମ୍ଳ ବାଷ୍ପ ପୃଥିବୀର ବାୟୁମଣ୍ଡଳରେ ପ୍ରବେଶ କରୁଛି ସେହି ପରିମାଣର ବାଷ୍ପ ଯଦି ନ କମି କ୍ରମାଗତ ଛଡ଼ାଯାଏ ତେବେ ବୈଜ୍ଞାନିକମାନେ ହିସାବ କରି ଦେଖିଛନ୍ତି ଯେ ୨୦୫୦ ଖ୍ରୀଷ୍ଟାବ୍ଦ ବେଳକୁ ପୃଥିବୀର ଉତ୍ତାପ ଆଉ ଆଠ ଡିଗ୍ରୀ ଫାରେନ୍‌ହିଟ୍ ବଢ଼ିଯିବ ।

ଗତ ମାସରେ କେତେଜଣ ସୋଭିଏତ ଓ ଫ୍ରାନ୍ସର ବୈଜ୍ଞାନିକ ମତ ଦେଇଛନ୍ତି ଯେ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ବାଷ୍ପର ଘନତ୍ୱ ଉପରେ ପୃଥିବୀର ଜଳବାୟୁ ନିୟନ୍ତ୍ରଣ ସମ୍ପୂର୍ଣ୍ଣ ରୂପେ ନିର୍ଭର କରେ । ସେମାନେ ପୃଥିବୀ ବାସୀଙ୍କୁ ସତର୍କ କରାଇ କହିଛନ୍ତି ଯେ ଯଦି କ୍ରମାଗତ ଭାବେ ଆମେ ଏପରି ଅଙ୍ଗାରକାମ୍ଳ ବାଷ୍ପ ପୃଥିବୀ ପୃଷ୍ଠକୁ ଛାଡ଼ିବା ତେବେ ବାୟୁମଣ୍ଡଳର ଉତ୍ତପ୍ତ ପ୍ରକ୍ରିୟା ଚାଲୁରହିବ ଏବଂ ଆସନ୍ତା ଅର୍ଦ୍ଧଶତାବ୍ଦୀ ମଧ୍ୟରେ ପୃଥିବୀ ପୃଷ୍ଠରେ ବଡ଼ଧରଣର ପରିବର୍ତ୍ତନ ସଂଘଟିତ ହେବ । ପୃଥିବୀର ଜଳବାୟୁ ଓ ପାଣିପାଗରେ ହଠାତ୍ ପରିବର୍ତ୍ତନ ଦେଖାଦେବ । ପୃଥିବୀ ପୃଷ୍ଠରେ ଥିବା ବହୁ ମରୁଭୂମିର ଆୟତନ ହଠାତ୍ ଦ୍ରୁତ ଗତିରେ ବୃଦ୍ଧି ପାଇବ । ଶ୍ୟାମଳ ଶସ୍ୟକ୍ଷେତ୍ର ଲୋପ ପାଇବ । ଏହା ବ୍ୟତୀତ କ୍ରାନ୍ତୀୟ ଝଡ଼ ବାତ୍ୟା ପୃଥିବୀ ଉପରେ ପ୍ରବାହିତ ହୋଇ ପ୍ରଳୟ ସୃଷ୍ଟି କରିବ । ସମୁଦ୍ରର ଜଳପତ୍ତନ ବୃଦ୍ଧି ପାଇବ ଓ ସମୁଦ୍ରର ଜଳରାଶି ସ୍ଥଳଭାଗ ଆଡ଼କୁ ମାଡ଼ିଆସି ବହୁ ଉପକୂଳବର୍ତ୍ତୀ ଉନ୍ନତ ସହରକୁ ଜଳମଗ୍ନ କରିଦେବ । ବାୟୁମଣ୍ଡଳର ଉତ୍ତାପ ବଢ଼ିବା ସଙ୍ଗେ ସଙ୍ଗେ ମେରୁ ଅଞ୍ଚଳରେ ଲକ୍ଷ ଲକ୍ଷ ମାଇଲ ଜମାହୋଇ ରହିଥିବା ବରଫ କ୍ରମେ ତରଳିବାକୁ ଲାଗିବ ଏବଂ ସମୁଦ୍ରର ସୀମା ବଢ଼ିଯାଇ ସ୍ଥଳଭାଗ କ୍ରମେ କମିଯିବ । ଟ୍ରପୋସ୍ଫିୟରରେ ବାୟୁମଣ୍ଡଳ ଉତ୍ତପ୍ତ ହୋଇଯିବାରୁ ସବୁବେଳେ ଥଣ୍ଡା ପବନ ଗରମ ବାୟୁମଣ୍ଡଳକୁ ଅପସାରିତ କରିବାକୁ ଖୁବଯୋରରେ ବୋହିବ ଏବଂ ଏଥିପାଇଁ ସବୁବେଳେ ପୃଥିବୀର ନିମ୍ନ

ଭାଗରେ ମେରୁରୁ ବିଷୁବରେଖା ଆଡ଼କୁ ଏବଂ ଉର୍ଦ୍ଧ୍ୱରେ ବିଷୁବରେଖାରୁ ମେରୁ ଆଡ଼କୁ ଖୁବ୍ ଜୋରରେ ବାତ୍ୟାପରି ପବନ ବୋହିବାରେ ଲାଗିବ । ଏହା ଦ୍ୱାରା ପୃଥିବୀର ବାୟୁମଣ୍ଡଳ ଓ ପାଣିପାଗ ଉପରେ ଏକ ଆକସ୍ମିକ ପରିବର୍ତ୍ତନ ଦେଖାଦେବ ।

"ଅତି ସର୍ବତ୍ର ଗର୍ହିତଂ" ମତରେ ଯଦି ଅଙ୍ଗାରକାମ୍ଳ ବାଷ୍ପ ସୂର୍ଯ୍ୟରଶ୍ମିକୁ ଧରିରଖି ପୃଥିବୀ ପୃଷ୍ଠକୁ ଉତ୍ତପ୍ତ କରୁନଥାନ୍ତା ତେବେ ପୃଥିବୀ ପୃଷ୍ଠରେ କୌଣସି ଜୀବଜଗତ ନଥାନ୍ତା, ଏହାର ବାୟୁମଣ୍ଡଳର ଉତ୍ତାପ ୫୯ ଡିଗ୍ରୀ ଫାରେନ୍ହିଟ ନ ହୋଇ ଶୂନ୍ୟ ଡିଗ୍ରୀ ହୋଇଥାଆନ୍ତା ଏବଂ ସବୁଆଡ଼େ ବରଫ ପଡ଼ୁଥାନ୍ତା । ମାତ୍ର ଏବେ ଆମ ମଣିଷ ସମାଜ ଦ୍ୱାରା ଅତ୍ୟଧିକ ଅଙ୍ଗାରକାମ୍ଳ ବାଷ୍ପ ବାୟୁମଣ୍ଡଳକୁ ବେପରବାୟ ଭାବରେ ଛାଡ଼ିବା ଦ୍ୱାରା ବର୍ତ୍ତମାନ ଏ ପ୍ରକାର ସଙ୍କଟ ଜନକ ଅବସ୍ଥା ସୃଷ୍ଟି ହେବାକୁ ଯାଉଛି । ଓଜନ କ୍ଷୟ ପରି ଏହା ପୃଥିବୀବାସୀଙ୍କ ଆଗରେ ବର୍ତ୍ତମାନ ଏକ ବଡ଼ ସଙ୍କଟ ରୂପେ ଦେଖାଦେଇଛି । ଏବେ ଶିଳ୍ପ ବିପ୍ଳବ ନାମରେ ଆମେ ଅତ୍ୟଧିକ କୋଇଲା ଜାଳି ତଥା ଅନ୍ୟାନ୍ୟ ବାଷ୍ପ ଉତ୍ପାଦନ କରି ପୃଥିବୀର ବାୟୁମଣ୍ଡଳକୁ ଅଧିକ ଉତ୍ତପ୍ତ କରିବାରେ ଲାଗିଛେ ।

ବୈଜ୍ଞାନିକ ଆରେର୍ହେନିୟସ ମତ ଦେଇଛନ୍ତି ଯେ ୧୮୯୦ ମସିହାଠାରୁ ଏହି ଉତ୍ତାପ ପ୍ରକ୍ରିୟା ବିଶେଷ ଭାବରେ ପୃଥିବୀର ବାୟୁ-ମଣ୍ଡଳରେ ଆରମ୍ଭ ହୋଇଛି । ଗତ କିଛି ବର୍ଷ ତଳେ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ବାଷ୍ପ ପରିମାଣ ୨୮୦ ବା ୨୯୦ ଭାଗ ପ୍ରତି ଏକ ଲକ୍ଷ ବାୟୁମଣ୍ଡଳ ଏରିଆରେ ଥିବା ବେଳେ ବର୍ତ୍ତମାନ ଏହି ପରିମାଣ ୩୪୦ ହୋଇଛି ଏବଂ ୨୦୫୦ ଖ୍ରୀଷ୍ଟାବ୍ଦ ବେଳକୁ ଏହା ଦୁଇଗୁଣରୁ ଅଧିକ ହୋଇ ୭୦୦ ହେବ । ସେତେବେଳେ ବାୟୁମଣ୍ଡଳର ଅବସ୍ଥା କ'ଣ ହେବ ତାହା କଳ୍ପନା କରାଯାଇ ପାରୁନାହିଁ । ସୁନ୍ଦର, ସବୁଜ, ଶସ୍ୟ-କ୍ଷେତ୍ର ପୂର୍ଣ୍ଣ ପୃଥିବୀ ହୁଏତ ବାଲିକୁଦରେ ପରିଣତ ହୋଇଯିବ ।

ଏହିପ୍ରକାର ପ୍ରାକୃତିକ ବିପତ୍ତିରୁ ଆମକୁ ରକ୍ଷା ପାଇବା ପାଇଁ ଆଜିଠାରୁ ସମସ୍ତ ପୃଥିବୀବାସୀଙ୍କୁ ଗମ୍ଭୀର ଭାବରେ ଏ ବିଷୟରେ ଚିନ୍ତା କରିବାକୁ ହେବ । ଏବେ ପୃଥିବୀର ଲୋକସଂଖ୍ୟା ୫୦୦ କୋଟି ଥିବା ବେଳେ ୨୦୫୦ ଖ୍ରୀଷ୍ଟାବ୍ଦ ବେଳକୁ ଏହା ୮୦୦ କୋଟି ହେବ । ସେତେବେଳେ ପୃଥିବୀ ପୃଷ୍ଠରେ ଏତେ ଲୋକ କିପରି ରହିବେ, କଣ ଖାଇବେ, ସେତେବେଳର ଅବସ୍ଥା କଣ ହେବ ! ଏଥିପ୍ରତି ଆଜିଠାରୁ କୌଣସି ପୃଥିବୀବାସୀ ଚିନ୍ତା କରିଛନ୍ତି କି ? ଜନସଂଖ୍ୟା ବୃଦ୍ଧିକୁ ରୋକାନଗଲେ କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାକୁ ଖାଦ୍ୟ, ବସ୍ତ୍ର ଯୋଗାଇବାକୁ ଆମକୁ ଶେଷରେ କେବଳ ପୃଥିବୀ ବା ପ୍ରକୃତି ଉପରେ ହିଁ ଅତ୍ୟାଚାର କରିବାକୁ ହେବ ଏବଂ ପରିଣାମରେ ଆମେ ହିଁ ମହାପ୍ରଳୟର ସୂତ୍ରଧର ହେବା । ଭବିଷ୍ୟତର ମହାପ୍ରଳୟକୁ ଏଡ଼ାଇଯିବାର କଣ ବାଟ ନାହିଁ ? ଏହା ହିଁ ଆଜି ସମସ୍ତଙ୍କ ପାଇଁ ପ୍ରଶ୍ନ ।



# ଧ୍ୱଂସ ପରିବେଶ ଓ
# ଦୁର୍ଭିକ୍ଷ ପ୍ରପୀଡ଼ିତ ଆଫ୍ରିକା

ଏବେ ପୃଥିବୀର ଜନସଂଖ୍ୟା ହୁ ହୁ ହୋଇ ବଢ଼ିବାରେ ଲାଗିଛି । ପୃଥିବୀ ପୃଷ୍ଠରେ ବିଭିନ୍ନ ବିକାଶଶୀଳ ଦେଶର ସରକାର ଏହି ବିସ୍ଫୋରଣାତ୍ମକ ଜନସଂଖ୍ୟାକୁ କମାଇବାକୁ ଚେଷ୍ଟା କରି ବିଫଳ ହେଲେଣି । ଚଳିତ ଶତାବ୍ଦୀ ଶେଷବେଳକୁ ଜନସଂଖ୍ୟା ୬୦୦ କୋଟି ଏବଂ ୨୦୫୦ ଖ୍ରୀଷ୍ଟାବ୍ଦ ବେଳକୁ ୮୦୦ କୋଟି ହେବ ବୋଲି କଳନା କରାଯାଇ ସାରିଲାଣି । ଜନସଂଖ୍ୟା ବୃଦ୍ଧି ଯୋଗୁ ପରିବେଶର ବିଲୋପ ଘଟି କ୍ରମେ ଖାଦ୍ୟ ସମସ୍ୟା ଗୁରୁତର ହେଲାଣି । ଜନସଂଖ୍ୟା ବୃଦ୍ଧି ସହିତ ତାଳ ଦେଇ ଖାଦ୍ୟ ଉତ୍ପାଦନ, ଜମି, ଭୂମି, ସମ୍ବଳ ଇତ୍ୟାଦି ବଢ଼ୁନଥିବାରୁ ଭବିଷ୍ୟତରେ କଣ ହେବ ତାହା ଆଜିଠାରୁ ବହୁ ଚିନ୍ତାଶୀଳ ବୁଦ୍ଧିଜୀବୀଙ୍କୁ ବ୍ୟଥିତ କଲାଣି । "ଭୁଭୁକ୍ଷିତ କିଂ ନ କରୋତି ପାପ" ନୀତିରେ ଭୋକିଲା ମଣିଷ ଖାଦ୍ୟ ପାଇଁ ଶେଷରେ ପ୍ରକୃତି ଉପରେ ଯେ କୌଣସି ପ୍ରକାର ଅତ୍ୟାଚାର କରିବାକୁ ପ୍ରସ୍ତୁତ ନାହିଁ । ଏହା ଫଳରେ ପରିବେଶ ଲୋପ ପାଉଛି । ଏବେ ସମସ୍ତେ ନିର୍ବିକାର ଭାବରେ ଆଗପଛ. କିଛି ନଭାବି, ପ୍ରାକୃତିକ ଭାରସାମ୍ୟ କଥା ଚିନ୍ତା ନକରି ପ୍ରକୃତି ଉପରେ ଅତ୍ୟାଚାର କରି ଚାଲିଛନ୍ତି । ମାତ୍ର ପୃଥିବୀ ପୃଷ୍ଠର ସବୁଠାରୁ ବୁଦ୍ଧିମାନ ଜୀବ ମଣିଷ ଏହାର ପରିଣାମ କଣ ହେବ ତାହା କେବେ ଚିନ୍ତା କରିଛି କି ?

ଆମ୍ଭେମାନେ ସମସ୍ତେ ପୃଥିବୀ ପୃଷ୍ଠର ଉପର ମାଟିରେ ଗୃହବାସ କରି ବଞ୍ଚି ରହିଛୁ । ପୃଥିବୀ ପୃଷ୍ଠର ଉପର ପତଳା ମାଟି ଗଛକୁ ବଢ଼ାଇ ଆମକୁ ତଥା ଅନ୍ୟାନ୍ୟ ଜୀବଜନ୍ତୁଙ୍କୁ ବଢ଼ାଇରଖି ଖାଦ୍ୟଯୋଗାଇ ବଞ୍ଚାଇଛି । ମାତ୍ର ଏବେ ଲୋକମାନଙ୍କଦ୍ୱାରା କ୍ରମାଗତଭାବେ ଜଙ୍ଗଲ ଧ୍ୱଂସ ଦ୍ୱାରା ଏହି ଉର୍ବର ମାଟି ସ୍ତର କ୍ରମେ ସମୁଦ୍ର ମଧ୍ୟକୁ ବର୍ଷା ଜଳରେ ଧୋଇ ହୋଇ ଚାଲିଯାଉଛି ।

ପୃଥିବୀ ପୃଷ୍ଠରେ ଏକ ଇଞ୍ଚ ବହଳର ଉର୍ବର ମାଟି ସୃଷ୍ଟି କରିବା ପାଇଁ ଶହଶହ ବର୍ଷ ଦରକାର ହୋଇଥାଏ । ଜଙ୍ଗଲ ଥିବାରୁ ବର୍ଷାପାଣିକୁ ଗଛ, ମାଟି ଓ ପତ୍ର ଧରି ରଖେ ଓ ଏହା ସହଜରେ ମାଟି ଭିତରକୁ ଯାଇ ମାଟି ଭିତରେ ଥିବା ନିମ୍ନ ଜଳ ସ୍ତରକୁ ବଢ଼ାଇ ଦେଇଥାଏ । ଯାହାଫଳରେ ବର୍ଷା ଦିନ ପରେ ଗ୍ରୀଷ୍ମଦିନେ ମଧ୍ୟ ଆମେ ମାଟିତଳେ ନିକଟରେ ଥିବା ଜଳସ୍ତରକୁ ସହଜରେ ପାଣି ପାଇଥାଉ । ମାତ୍ର ଏବେ ଜଙ୍ଗଲ ନଥିବାରୁ ମୂଷଳ ଧାରରେ ବର୍ଷା ଖୋଲା ଜମିରେ ହେବାଦ୍ୱାରା ଉପରସ୍ତର ଉର୍ବର ମାଟିକୁ ନଦୀ ମଧ୍ୟକୁ ଧୋଇ ନେଉଛି ଏବଂ ମାଟିର ଜଳକୁ ବାନ୍ଧିରଖି ଦ୍ରବିଭୂତ କରିବାର କ୍ଷମତା କମିଯାଉଛି । ବର୍ଷା ଜଳ ଆଉ ଭୂତଳକୁ ଯାଇପାରୁନାହିଁ ଏବଂ ପରିଣାମରେ ଭୂତଳର ଜଳସ୍ତର ମଧ୍ୟ ବଢ଼ୁନାହିଁ । ଫଳରେ ଗ୍ରୀଷ୍ମ ଦିନେ ଆମେ ଗଭୀର ଭୂମି ଖନନ କରି ମଧ୍ୟ ପାନୀୟ ଜଳ ପାଉନାହୁଁ । ଚାରିଆଡ଼େ ମରୁଡ଼ି ଅବସ୍ଥା ଦେଖା-ଦେଉଛି । ଅନ୍ୟପକ୍ଷରେ ଉର୍ବର ମାଟି ନଦୀ ମଧ୍ୟକୁ ଧୋଇଯାଇ ସମୁଦ୍ରକୁ ଚାଲିଯାଉଛି ଏବଂ ସମୁଦ୍ର ମୁହାଣକୁ ପୋତି ପକାଇବା ଫଳରେ ବର୍ଷାଦିନେ ନଦୀରୁ ଜଳ ନିଷ୍କାସନ ହୋଇନପାରି ପ୍ରବଳ ବନ୍ୟା ହୋଇ ବହୁ ଧନ ଜୀବନ ନଷ୍ଟ କରୁଛି ।

ହିସାବକରି ଦେଖାଯାଇଛି ଯେ କେବଳ ଭାରତରେ ୬ମାସ ମଧ୍ୟରେ ଯେତିକ ମାଟି ବର୍ଷା ଜଳ ପବନ ଇତ୍ୟାଦି ଦ୍ୱାରା ଧୋଇଯାଇ ସମୁଦ୍ରକୁ ଚାଲିଯାଉଛି, ତାକୁ ଯଦି ଆମେ ସଂଗ୍ରହ କରି ପାରନ୍ତେ ତେବେ ସେଥିରୁ ଭାରତବର୍ଷର ପ୍ରତ୍ୟେକ ପରିବାର ପାଇଁ ଘର ତିଆରି ଇଟା ତିଆରି କରାଯାଇପାରନ୍ତା । ଏଥିରୁ ଆମେ ବର୍ଷ ପରେ ବର୍ଷ କେତେ ମୂଲ୍ୟବାନ ସମ୍ପଦକୁ ନଷ୍ଟ କରି ଚାଲିଛୁ ତାହା ଅନୁମାନ କରାଯାଇପାରେ । ମାତ୍ର ଏଥିପ୍ରତି ଆମର କାହାରି ଯେପରି ଲକ୍ଷ୍ୟ ନାହିଁ ।

କେବଳ ସେତିକି ନୁହେଁ ଜଙ୍ଗଲ ଧ୍ୱଂସ ଯୋଗୁ ଭୂତଳ ଜଳସ୍ତର ବହୁ କମିଯାଇଛି । ମରୁଡ଼ି ପଡ଼ୁଥିବା ଅଞ୍ଚଳରେ ଆମେ ବାଧ୍ୟହୋଇ ଗଭୀର ନଳକୂପ ଖୋଳି ଭୂତଳ ଜଳକୁ ବ୍ୟବହାର କରୁଛୁ । ମାତ୍ର

ପରବର୍ତ୍ତୀ ବର୍ଷା କାଳରେ ଏହି ସବୁ ଅଞ୍ଚଳ ବୃକ୍ଷ ଶୂନ୍ୟ ହୋଇଥିବାରୁ ବର୍ଷା ଜଳ ମାଟି ତଳକୁ ନଯାଇ ସିଧା ନଦୀନାଳକୁ ବୋହିଯିବା ଦ୍ୱାରା ଭୂତଳ ଜଳସ୍ତର ବଢ଼ୁନାହିଁ । ଫଳରେ ଆମ ଦେଶର ବହୁ ଅଞ୍ଚଳରେ କ୍ରମାଗତ ଭାବରେ ଭୂତଳ ଜଳସ୍ତର କମି କମି ଯାଉଛି । ଏଥିପାଇଁ ୧୯୮୫ ମସିହାରେ ସାଧାରଣ ବୃଷ୍ଟିପାତ ହାର ସମାନ ଥିଲେ ସୁଦ୍ଧା ଭୂତଳ ଜଳସ୍ତର ବହୁ ତଳେ ଥିବାରୁ ରାଜ୍ୟର ୪୭୨୮ଟି ଗ୍ରାମକୁ ମରୁଡ଼ି ବିପନ୍ନ ବୋଲି ଘୋଷଣା କରାଯାଇଥିଲା । ଏହି ପ୍ରକ୍ରିୟା ଚାଲୁ ରହିଲେ ଆମେ ଆଉ କେତେଦିନ ଯାଏ ଭୂତଳଜଳ ପାଇପାରିବା ତାହା ଆଜି-ଠାରୁ ଚିନ୍ତାର ବିଷୟ ହେଲାଣି ।

ସୁସ୍ଥ ପରିବେଶ ତଥା ମୃତ୍ତିକା ସଂରକ୍ଷଣ ପାଇଁ ଆମ ଭାରତ-ବର୍ଷରେ ସର୍ବନିମ୍ନ ୩୩ ଭାଗ ଅଞ୍ଚଳରେ ଜଙ୍ଗଲ ରହିବା ଆବଶ୍ୟକ ଥିବା ସ୍ଥଳେ ବର୍ତ୍ତମାନ ଏହା ୧୦ ଭାଗରେ ପହଞ୍ଚିଛି । ଯଦି ବର୍ତ୍ତମାନ ଅବସ୍ଥା ପରି ଜଙ୍ଗଲ ସମ୍ପଦ ଲୋପ ପ୍ରକ୍ରିୟା ଚାଲୁ ରହେ ତେବେ ଏକବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ଅବସ୍ଥା କଣ ହେବ ତାହା ହୃଦୟଙ୍ଗମ କରା-ଯାଇପାରେ । ସେତେବେଳେ ରୋଷେଇ କରିବା ପାଇଁ ଜାଳ, ପିଇବା ପାଣି ଓ ଖାଦ୍ୟ ସଙ୍କଟ ଗୁରୁତର ହେବ । ଏବେ ପରିବେଶର ଦ୍ରୁତ ବିଲୋପ ଯୋଗୁ ମୌସୁମୀ ବାୟୁର ଅନିୟମିତତା ଦେଖାଦେଇ ଦେଶରେ ଘୋର ମରୁଡ଼ି ଅବସ୍ଥା ଦେଖାଦେଇଛି । ପୂର୍ବରୁ ଦେଶରେ ଖାଦ୍ୟଶସ୍ୟ ମହଜୁଦ ଥିବାରୁ ଭାରତ ସରକାର କେତେକାଂଶରେ ଏହି ମରୁଡ଼ି ଅବସ୍ଥା ସମ୍ଭାଳିବାକୁ ସକ୍ଷମ ହୋଇଛନ୍ତି ମାତ୍ର ଏହି ଅବସ୍ଥା ଯଦି କ୍ରମାଗତ ଦେଖାଦିଏ ତେବେ କେଉଁ ସରକାର କଣ ପ୍ରତିକାର କରି-ପାରିବ ?

କେବଳ ଭାରତ ନୁହେଁ, ପୃଥିବୀ ପୃଷ୍ଠର ବହୁ ଦେଶ, ବିଶେଷକରି ବହୁ ବିକାଶଶୀଳ ଦେଶରେ ବର୍ତ୍ତମାନ ମଧ୍ୟ ପ୍ରାକୃତିକ ଋତୁ ନିୟମରେ ଘୋର ଅନିୟମିତତା ଦେଖାଦେଇ ମରୁଡ଼ି, ବନ୍ୟା, ବାତ୍ୟା ପ୍ରଭୃତି ପ୍ରାକୃତିକ ବିପତ୍ତି ଦେଖା ଦେଲାଣି । ତମସାଚ୍ଛନ୍ନ ଜଙ୍ଗଲ

ସମ୍ପଦରେ ପରିପୂର୍ଣ୍ଣ ସାହାରା ମରୁଭୂମିର ମହାଦେଶ ଆଫ୍ରିକା ମହାଦେଶରେ କିପରି ପରିବେଶ ଲୋପ ତଥା ଜନସଂଖ୍ୟା ବୃଦ୍ଧି ଯୋଗୁ କ୍ରମାଗତଭାବେ ଦୁର୍ଭିକ୍ଷ ଓ ମରୁଡ଼ି ଲାଗିରହି ଲକ୍ଷ ଲକ୍ଷ ଲୋକଙ୍କ ଜୀବନହାନି କରାଇ ସାରିଲାଣି ସେ ବିଷୟରେ ଆଲୋଚନା କଲେ ଜଣାଯାଏ ।

ଆଫ୍ରିକା ଏକ ଘନ ଜଙ୍ଗଲପୂର୍ଣ୍ଣ, ଉଷ୍ଣ ଜଳବାୟୁ ଓ ମରୁଭୂମିର ମହାଦେଶ ବୋଲି ଅନେକଙ୍କର ଧାରଣା । ମାତ୍ର ଏହି ଦେଶ ଅତି ଉଚ୍ଚ ପର୍ବତମାଳା, ଥଣ୍ଡା ଜଳବାୟୁ ପୂର୍ଣ୍ଣ ଓ ବହୁ ଖଣିଜସମ୍ପଦ ପରିପୂର୍ଣ୍ଣ । ସୁନା, ୟୁରାନିୟମ, ରୂପା ପୂର୍ଣ୍ଣ ଦକ୍ଷିଣ ଆଫ୍ରିକା, ଘାନାର ସୁନା ଓ ହୀରା, ଜାମ୍ବିଆର ହଜାର ହଜାର ବର୍ଗମାଇଲ ବିସ୍ତୃତ ତମ୍ବା ଖଣି, ତୈଳ ସମ୍ପଦ ପରିପୂର୍ଣ୍ଣ ଉତ୍ତରାଞ୍ଚଳ, କୋଇଲା, ଲୁହା ପ୍ରଭୃତି ବହୁ ଖଣିଜ ସମ୍ପଦ ମହାଦେଶର ବହୁ ଅଞ୍ଚଳରେ ମିଳେ । ଏହା ବ୍ୟତୀତ ଏହି ମହାଦେଶ ବହୁ କୃଷି ସାମଗ୍ରୀ ମଧ୍ୟରେ ଚିନାବାଦାମ (?) ଭୁଲା, ଗହମ, କଫି, କୋକା, ରବର ଓ ଧୂଆଁପତ୍ର ପ୍ରଭୃତି ବିଦେଶକୁ ରପ୍ତାନୀ କରେ । ଏହି ମହାଦେଶର ଲମ୍ବ ଉତ୍ତର ଦକ୍ଷିଣରେ ୮୦୫୦ କିଲୋମିଟର ଏବଂ ପ୍ରସ୍ଥରେ ୭୪୦୦ କିଲୋମିଟର । ମହାଦେଶର ସମୁଦାୟ ଲୋକସଂଖ୍ୟା ପ୍ରାୟ ୫୦ କୋଟି । ଏହି ମହାଦେଶ ଏତେ ବଡ଼ ଯେ ଯୁକ୍ତରାଷ୍ଟ୍ର ଆମେରିକା, ସମଗ୍ର ଇଉରୋପ, ଭାରତ ଓ ଜାପାନ ଦେଶର ମିଶ୍ରିତ ଆୟତନ ଠାରୁ ମଧ୍ୟ ଏହାର ଆକାର ଅଧିକ । ଏହି ମହାଦେଶର ଲୋକମାନେ ପ୍ରାୟ ଏକହଜାର ବିଭିନ୍ନ ଭାଷା ବ୍ୟବହାର କରିଥାନ୍ତି । ସମଗ୍ର ମହାଦେଶର ଏକ ବିସ୍ତୃତ ଅଞ୍ଚଳକୁ ସାହାରା ମରୁଭୂମି ଗ୍ରାସ କରି ରହିଛି । ମହାଦେଶର କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳକୁ ଛାଡ଼ିଦେଲେ ଉର୍ବର ମୃତ୍ତିକା ଏହି ମହାଦେଶରେ ପ୍ରାୟ ନାହିଁ । ଏହି ମହାଦେଶର ମୃତ୍ତିକା ଦୁର୍ବଳ । ତେଣୁ ଅଧିକାଂଶ ଆଫ୍ରିକାବାସୀ ଯାଯାବର ଶ୍ରେଣୀର ।

ଏବେ ଆଫ୍ରିକା ମହାଦେଶର ଲୋକସଂଖ୍ୟା ବଢ଼ିବାରେ ଲାଗିଛି । ଫସଲ ଉତ୍ପାଦନ କମ ଓ ଜଙ୍ଗଲ ନଷ୍ଟ ତଥା ଦୁର୍ବଳ ମୃତ୍ତିକାରୁ ଅଧିକ ଫସଲ ଉତ୍ପାଦନ ନ ହେବା ଫଳରେ ଗତ ଦଶନ୍ଧିରେ

ଆଫ୍ରିକା ମହାଦେଶର ବିଭିନ୍ନ ଦେଶରେ ଦୁର୍ଭିକ୍ଷ ଦେଖାଦେଇଛି । ଏହି କରାଳ ଦୁର୍ଭିକ୍ଷ କବଳରେ ପଡ଼ି ୧୯୮୪-୮୫ ମସିହାରେ କେବଳ ଇଥୋପିଆ ଦେଶରେ ଦଶଲକ୍ଷ ଲୋକଙ୍କ ସମେତ ଆଫ୍ରିକାର ଅନ୍ୟ ଦେଶରେ ମୋଟ ୨୦ ଲକ୍ଷ ଲୋକ ଖାଇବାକୁ ନପାଇ ପୋକମାଛି ପରି ମରିଗଲେ । ଆମେରିକା ୫ ହଜାର ଲକ୍ଷ ଡଲାର ତଥା ପୃଥିବୀର ଅନ୍ୟ ଦେଶରୁ ବିପୁଳ ପରିମାଣରେ ସାହାଯ୍ୟ, ଖାଦ୍ୟଦ୍ରବ୍ୟ ପହଞ୍ଚିବାରୁ ଅବଶିଷ୍ଟ ଲୋକେ ଅସ୍ଥି କଙ୍କାଳ ହୋଇ ବଞ୍ଚିଗଲେ । ଆଶ୍ଚର୍ଯ୍ୟର କଥା ୧୯୮୪-୮୫ ମସିହାଠାରୁ କ୍ରମାଗତ ଭାବେ ଇଥୋପିଆରେ ଭଲ ବର୍ଷା ହୋଇନାହିଁ । ଚଳିତବର୍ଷ ମଧ୍ୟ ଏହି ଦେଶରେ ଘୋର ମରୁଡ଼ି ଅବସ୍ଥା ଦେଖାଦେଇଛି ।

କେବଳ ଇଥୋପିଆ ନୁହେଁ, ଆଫ୍ରିକାର ଆଙ୍ଗୋଲା, ବୋଷ୍ଟ୍ସ୍ୱାନା, ଚାଦ, ମାଲଓ୍ୱି, ମୋଜାମ୍ବିକ, ନାଇଜର, ସୋମାଲିଆ, ସୁଦାନ, ସୁଇଜଲାଣ୍ଡ, ତାଞ୍ଜାନିଆ, ଉଗାଣ୍ଡା, ଜାଇର, ଜାମ୍ବିଆ ଓ ଜିମ୍ବାଓ୍ୱେ ପ୍ରଭୃତି ଦେଶରେ ମଧ୍ୟ ମରୁଡ଼ି ଓ ଖାଦ୍ୟ ସମସ୍ୟା ଗୁରୁତର ହୋଇଛି । ଚଳିତ ବର୍ଷ ବିଶ୍ୱର ବିଭିନ୍ନ ଆଡ଼ୁ ପ୍ରଚୁର ପରିମାଣର ଖାଦ୍ୟଶସ୍ୟ ବୋଝେଇ ଜାହାଜ ଯାଇ ନପହଞ୍ଚିଲେ ସମଗ୍ର ମହାଦେଶର ଅବସ୍ଥା ଅସମ୍ଭାଳ ହେବ ବୋଲି ବିଶେଷଜ୍ଞମାନେ ମତ ଦେଲେଣି । ଆମେରିକାର 'ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ' ସଂସ୍ଥା ଏହି ସବୁ ଦେଶକୁ ଖାଦ୍ୟ ସାହାଯ୍ୟ ଯୋଗାଇ ଦେବାକୁ ନିଷ୍ପତ୍ତି କରିଛି ।

ଆଫ୍ରିକା ମହାଦେଶର ଛାତ ବୋଲି କୁହାଯାଉଥିବା ଶ୍ୱେତନୀଳ ଓ ନୀଳ ନଦୀର ପାର୍ବତ୍ୟ ଦେଶ ଇଥୋପିଆ ଯେଉଁଥିରେ ୧୫ ଲକ୍ଷ ନିଗ୍ରୋଙ୍କ ସମେତ ବହୁ ଶ୍ରେଣୀର ଲୋକ ବାସ କରନ୍ତି ଏବଂ ଲୋକସଂଖ୍ୟା ଦୃଷ୍ଟିରୁ ଆଫ୍ରିକାର ୪ର୍ଥ ବୃହତ୍ତମ ଦେଶ, ସେଠାରେ ବର୍ତ୍ତମାନର ଅବସ୍ଥା ୧୯୮୪-୮୫ ପରି ଭୀଷଣ ନହେଲେ ମଧ୍ୟ ଯଦି ପୃଥିବୀବାସୀ ଏହି ଦେଶକୁ କ୍ରମାଗତ ଖାଦ୍ୟ ସାହାଯ୍ୟ ଯୋଗାଣ ଅବ୍ୟାହତ ନରଖନ୍ତି ତେବେ ଅବସ୍ଥା ଭବିଷ୍ୟତରେ ଗୁରୁତର ହେବବୋଲି ସେଠାରେ ରିଲିଫ

କାର୍ଯ୍ୟ କରୁଥିବା ସ୍ୱିଡ଼େନ ରେଡ଼କ୍ରସ ସଂସ୍ଥାର ଡକ୍ଟର ଗୋରାନ ହନସନ ମତ ଦେଇଛନ୍ତି—କ୍ରମାଗତ ଭାବରେ ବର୍ଷ ପରେ ବର୍ଷ ଆଫ୍ରିକାରେ କାହିଁକି ଦୁର୍ଭିକ୍ଷ ଦେଖାଦେଲା ଏହା ଉପରେ ତଦନ୍ତ କରି ବହୁ ବିଶେଷଜ୍ଞ ମତ ଦେଇଛନ୍ତି ଯେ ପରିବେଶ ତଥା ଜଙ୍ଗଲ ଲୋପ ଓ ଜନସଂଖ୍ୟା ବୃଦ୍ଧି ଫଳରେ ବର୍ଷା ଠିକ୍ ସମୟରେ ନହୋଇ ଏପରି ଅବସ୍ଥା ସୃଷ୍ଟି ହେଲା ।

ଏଥି ପୂର୍ବରୁ ୧୮୮୮ରେ ଇଥୋପିଆରେ ସଂଘଟିତ ହୋଇଥିବା ଦୁର୍ଭିକ୍ଷରେ ଦେଶର ଏକତୃତୀୟାଂଶ ଲୋକ ମୃତ୍ୟୁବରଣ କରିଥିଲେ । ୧୯୮୧ ମସିହା ପରଠାରୁ ଦେଶରେ ବର୍ଷାର ଅଭାବ କ୍ରମାଗତ ଭାବରେ ଦେଖାଦେଇଛି । ୧୯୮୫-୮୬ର ପରବର୍ଷ ଭଲବର୍ଷା ଦେଶରେ ହୋଇ-ଥିଲେ ମଧ୍ୟ ଦୁର୍ଭିକ୍ଷ ପ୍ରପୀଡ଼ିତ ଅସ୍ଥିକଙ୍କାଳସାର କୃଷକ କୃଷି କାମ ଠିକ୍ ସମୟରେ କରିପାରିନଥିଲେ । ବହୁ କଷ୍ଟରେ ଏମାନେ ଅଗଷ୍ଟ ମାସରେ କୃଷିକାର୍ଯ୍ୟ ଆରମ୍ଭ କଲାପରେ ବର୍ଷା ସମ୍ପୂର୍ଣ୍ଣ ଶୁଖିଯାଇ ସବୁ ଫସଲ ନଷ୍ଟ ହୋଇଯାଇଥିଲା । ସେତେବେଳେ ଇଥୋପିଆର ୧୪ଟି ପ୍ରଦେଶ ମଧ୍ୟରୁ ୯ଟି ପ୍ରଦେଶରେ ଦୁର୍ଭିକ୍ଷ ଦେଖାଦେଇଥିଲା । ବର୍ତ୍ତମାନ ସୁଦ୍ଧା ମିଳିତ ଜାତିସଂଘ ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ ଅନୁସାରେ ସେଠାରେ ରିଲିଫ ଯୋଗାଣ କାର୍ଯ୍ୟକ୍ରମ ଖୋଲା ରଖାଯାଇଛି । ୧୯୮୮ ବର୍ଷ ପାଇଁ ଏହି ଦେଶ ପାଇଁ ମୋଟ ୯ ଲକ୍ଷ ୫୦ ହଜାର ଟନ ଖାଦ୍ୟ ଦରକାର ଥିବା ବେଳେ ବର୍ତ୍ତମାନ ସୁଦ୍ଧା ପ୍ରାୟ ୬ଲକ୍ଷ ଟନ ଖାଦ୍ୟ ସଶ୍ୟ ପୃଥିବୀର ବିଭିନ୍ନ ଦେଶରୁ ଦାନ ସୂତ୍ରରେ ମିଳି ସାରିଲାଣି । ଏହା ବ୍ୟତୀତ ୟୁରୋପରୁ ଉଡ଼ାଜାହାଜ ଯୋଗେ ଖାଦ୍ୟ ପଦାର୍ଥ ନିଆଯାଇ ବିପନ୍ନ ଅଞ୍ଚଳରେ ବିତରଣ କରିବାର ବ୍ୟବସ୍ଥା ମଧ୍ୟ କରାଯାଉଛି ।

ପୃଥିବୀ ବାସୀ କେବଳ ଇଥୋପିଆର ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କୁ ଖାଦ୍ୟ ଯୋଗାଇବାରେ ଲାଗିଥିବା ବେଳେ ଚଳିତ ବର୍ଷ ସାରା ଆଫ୍ରିକା ମହାଦେଶର ଅଧିକାଂଶ ଦେଶରେ ଦେଖାଦେଇଥିବା ଉତ୍କଟ ମରୁଡ଼ି ଓ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କୁ ବଞ୍ଚାଇବାକୁ ଖାଦ୍ୟ କେଉଁଠୁ ଆସିବ ସେଥିନେଇ ଭାବେଣୀ ପଡ଼ିଲାଣି ।

ଇଥୋପିଆର ପଡ଼ୋଶୀ ଦେଶ ମରୁଭୂମି ପୂର୍ଣ୍ଣ ସୁଦାନରେ ଇଥୋପିଆ ପ୍ରଭୃତି ଦେଶରୁ ପ୍ରାୟ ୯ଲକ୍ଷ ୭୫ ହଜାର ଶରଣାର୍ଥୀ ଗୃଲଯାଇ ଆଶ୍ରୟ ନେବା ଦ୍ୱାରା ସେ ଦେଶରେ ଖାଦ୍ୟ ସମସ୍ୟା ଦେଖା-ଦେଇଛି । ଏହି ସମସ୍ୟା ସହିତ ଚଳିତ ବର୍ଷ ମଧ୍ୟ ସୁଦାନରେ ଘୋର ମରୁଡ଼ି ଅବସ୍ଥା ଦେଖାଦେଇ ଦେଶରେ ଏକ ବିସ୍ଫୋରଣାତ୍ମକ ଅବସ୍ଥା ସୃଷ୍ଟି କରିବାକୁ ଯାଉଛି ।

ଆଫ୍ରିକାର ଅନ୍ୟତମ ଗରିବ ରାଷ୍ଟ୍ର ମୋଜାମ୍ବିକରେ ୧୯୭୫ ମସିହାଠାରୁ ଗୃହଯୁଦ୍ଧ ଲାଗିରହି ଦେଶର ଅର୍ଥନୀତି ବିପର୍ଯ୍ୟସ୍ତ ହୋଇ-ପଡ଼ିଥିବା ବେଳେ ଚଳିତ ବର୍ଷ ଦେଶରେ ଦୁର୍ଭିକ୍ଷ ଦେଖାଦେଇ ପ୍ରାୟ ୭୦ ଲକ୍ଷରୁ ଅଧିକ ଲୋକ ଖାଇବାକୁ ନପାଇ ଅସ୍ଥିକଙ୍କାଳସାର ହୋଇ ମୃତ୍ୟୁ ସହିତ ସଂଗ୍ରାମ କରୁଛନ୍ତି । ଦେଶରେ ଖାଦ୍ୟ ସମସ୍ୟା କ୍ରମେ ଗୁରୁ-ତର ଓ ଭୟଙ୍କର ହେଉଛି ।

ଆଙ୍ଗୋଲାରେ ମନୁଷ୍ୟକୃତ ଦୁର୍ଭିକ୍ଷ ଦେଖାଦେଇଛି । ଏଠାରେ ଦକ୍ଷିଣ ଆଫ୍ରିକା ବିରୋଧୀ ଓ ସପକ୍ଷବାଦୀ ଗରିଲାମାନଙ୍କ ମଧ୍ୟରେ ଯୁଦ୍ଧ ଲାଗିରହି ଶସ୍ୟକ୍ଷେତରେ ମାଇନ ବିଛା ଯାଉଥିବାରୁ ଶସ୍ୟ ଅମଳ ହୋଇପାରୁନାହିଁ । ବହୁ ଶସ୍ୟ ନଷ୍ଟ ହୋଇ ଦେଶରେ ଖାଦ୍ୟ ସମସ୍ୟା ଗୁରୁତର ହେଲାଣି । ଜାତିସଂଘ ତରଫରୁ ହିସାବ କରି ଦେଖାଯାଇଛି ଯେ ୧୯୮୭ ମସିହାରେ ଦେଶର ଶତକଡ଼ା ୪୫ ଭାଗ ପିଲା ରକ୍ତହୀନତା ଓ ଖାଦ୍ୟାଭାବଜନିତ ରୋଗରେ ପୀଡ଼ିତ ହୋଇଥିଲେ । ସେହିପରି ମାଲାଓ୍ୱି ଦେଶରେ ମଧ୍ୟ ମରୁଡ଼ି ଅବସ୍ଥା ଦେଖାଦେଇଛି । ନିକଟବର୍ତ୍ତୀ ମୋଜାମ୍ବିକରୁ ମଧ୍ୟ ୩ ଲକ୍ଷରୁ ଊର୍ଦ୍ଧ୍ୱ ଶରଣାର୍ଥୀ ଏହି ଦେଶରେ ଆସି ଆଶ୍ରୟ ନେଇଛନ୍ତି । ଏହା ବ୍ୟତୀତ ତାଞ୍ଜାନିଆ, ଉଗାଣ୍ଡା, ଜାମ୍ବିଆ ପ୍ରଭୃତି ଆଫ୍ରିକାର ବହୁ ଦେଶରେ ଠିକ୍ ସମୟରେ ବର୍ଷା ନ ହେବା ଫଳରେ ଘୋର ମରୁଡ଼ି ପରିସ୍ଥିତି ଦେଖାଦେଇ ଏକ ଗୁରୁତର ସଙ୍କଟ-ଜନକ ପରିସ୍ଥିତି ଉକ୍ତ ମହାଦେଶରେ ସୃଷ୍ଟି କରିବାକୁ ଯାଉଛି ।

ଖଣିଜ ସମ୍ପଦରେ ପୂର୍ଣ୍ଣ, ପ୍ରାକୃତିକ ସମ୍ପଦ ଓ ଜଙ୍ଗଲ ପୂର୍ଣ୍ଣ

ଆଫ୍ରିକା ମହାଦେଶର ବର୍ତ୍ତମାନ ଅବସ୍ଥା କଣ ଏଥିରୁ ସହଜରେ ଜଣାପଡ଼େ । ଏହି ମହାଦେଶରେ ଘୋର ଖାଦ୍ୟସମସ୍ୟା ସୃଷ୍ଟି ହୋଇ ଏକପ୍ରକାର ଗ୍ରରଖାର ହେବା ଅବସ୍ଥାକୁ ଏହା ଆସିଗଲା ପରି ମନେ ହୁଏ । କ୍ରମାଗତ ଲୋକସଂଖ୍ୟା ବୃଦ୍ଧି ଓ ଜଙ୍ଗଲ ନଷ୍ଟ ତଥା ପରିବେଶ ବିଲୋପ ଯୋଗୁ ଆଜି ଏହି ଅବସ୍ଥା ଉପୁଜିଛି । କେବଳ ଆଫ୍ରିକା କାହିଁକି ବିଶ୍ୱର ଅଧିକାଂଶ ବିକାଶଶୀଳ ଦେଶର ଅବସ୍ଥା ମଧ୍ୟ ନିକଟ ଭବିଷ୍ୟତରେ ଏପରି ହେବାକୁ ଯାଉଛି । ଏବେ ଅଧିକାଂଶ ଦେଶରେ ଅଳ୍ପବହୁତେ ଏପରି ଅବସ୍ଥା ଦେଖା ଦେଲାଣି । ମାଡ଼ି ଆସୁଥିବା ଜନସଂଖ୍ୟାକୁ କିପରି ଭାବରେ ରୋକାଯାଇ ପୃଥିବୀ ତଥା ପରିବେଶରେ ସମତାରକ୍ଷା କରାଯିବ ତାହା ବର୍ତ୍ତମାନ ପୃଥିବୀର ବହୁ ବୁଦ୍ଧିଜୀବୀଙ୍କର ଚିନ୍ତାର ବିଷୟ ହୋଇଛି । ବିଶେଷଜ୍ଞମାନେ ଯେତେ ସତର୍କବାଣୀ ଶୁଣାଇଲେ ମଧ୍ୟ ପେଟ ପାଇଁ ଯାହା ନ କରିବା କଥା ତାହା କରିବାକୁ ମଣିଷ ପଛଉ ନାହିଁ । ମାତ୍ର ଭୁଲ ବାଟରେ ଗ୍ଭଲୁଥିବା ମଣିଷକୁ ଏବେଠାରୁ ନ ରୋକିଲେ ଏହି ପ୍ରକ୍ରିୟା ଆଉ କେତେକାଳ ଗ୍ଭଲୁ ରହିବ ? ଭବିଷ୍ୟତର ମହାପ୍ରଳୟରୁ ମାନବ ସମାଜକୁ ରକ୍ଷା କରିବାକୁ କଣ କିଛି ଉପାୟ ନାହିଁ ?



# ରସାୟନିକ ଅସ୍ତ୍ରର ବିଭୀଷିକା

ମଧ୍ୟପ୍ରାଚ୍ୟରେ ଚଳିତ ଶତାବ୍ଦୀର ସବୁଠାରୁ ଲୋମହର୍ଷଣକାରୀ ଘଟଣା ହେଉଛି ଦୁଇ ମୁସଲମାନ ରାଷ୍ଟ୍ର ଇରାକ ଓ ଇରାନ ମଧ୍ୟରେ କ୍ରମାଗତ ପ୍ରାୟ ୮ ବର୍ଷ ଧରି ସଂଗ୍ରାମ ଚାଲୁ ରହିବା । ଏହି ଯୁଦ୍ଧର ବିଭୀଷିକା ଏପରି ଉତ୍କଟ ହୋଇଛି ଯେ ତାହା କଳ୍ପନା ମଧ୍ୟ କରି ହେଉନାହିଁ । ବର୍ତ୍ତମାନ ଯୁଦ୍ଧ ବିରତି ପାଇଁ ପୃଥିବୀର ବହୁ ରାଷ୍ଟ୍ର ତଥା ମିଳିତ ଜାତିସଙ୍ଘ ପକ୍ଷରୁ ଉଭୟ ରାଷ୍ଟ୍ରଙ୍କୁ କରାଯାଇଥିବା ଅନୁରୋଧର ଯେପରି କିଛି ମୂଲ୍ୟ ନାହିଁ । ଏହି ଦୁଇଦେଶ ବର୍ତ୍ତମାନ ଧ୍ୱଂସ ସ୍ତୂପରେ ପରିଣତ ହୋଇ ସାରିଲଣି । ପ୍ରତିଦିନ ହଜାର ହଜାର ନିରୀହ ଲୋକ ନିଃସହାୟ ଭାବରେ ପ୍ରାଣ ହରାଉଛନ୍ତି ଏବଂ ବହୁ ବେସାମରିକ ସାଧାରଣ ଜନତା ବିକଳାଙ୍ଗ ବା ଅକର୍ମଣ୍ୟ ହୋଇ ଅତି କଷ୍ଟ ଭୋଗି ପଡ଼ିରହିଥିବା ସ୍ଥଳେ ପ୍ରତିଦିନ ବିପକ୍ଷ ଦେଶର କିଏ କେତେ ଲୋକଙ୍କୁ ମାରିପାରିଲି ତାହା ପ୍ରକାଶ କରି ଉଭୟ ଦେଶର ନେତୃବୃନ୍ଦ ଆନନ୍ଦ ଉଲ୍ଲସିତ ହେଉଛନ୍ତି । ବିଜ୍ଞାନର ଉନ୍ନତି ଫଳରେ ବିଶ୍ୱରେ ତିଆରି ହୋଇ ରହିଥିବା ବହୁ ମାରାତ୍ମକ ମାରଣାସ୍ତ୍ରରେ ସତେ ଯେପରି ଏଠାରେ ପରୀକ୍ଷା ଚାଲିଛି ।

ବର୍ତ୍ତମାନ ଯୁଗର ମଣିଷ କିଏ କେତେ କଷ୍ଟ ଦେଇ ଅନ୍ୟ ମଣିଷକୁ ମାରିପାରିବ ସେ ଉପରେ ଗବେଷଣା କରି ନିଜ ଭାଇକୁ ମାରିବା ପାଇଁ ବିଜ୍ଞାନ ବଳରେ ବହୁ ମାରାତ୍ମକ ଅସ୍ତ୍ରଶସ୍ତ୍ର ତିଆରି କରିଛି । ଏହି ସବୁ ଅସ୍ତ୍ର ପ୍ରୟୋଗ ପରମାଣୁ ବୋମାଠାରୁ, ହାଇଡ୍ରୋଜେନ ବୋମା ବର୍ଷଣଠାରୁ ଆହୁରି ମାରାତ୍ମକ ଏବଂ ଏହାର ପ୍ରୟୋଗଦ୍ୱାରା ଲୋକେ ତଥା ସାଧାରଣ ଜୀବଜନ୍ତୁ ଯେ କିପରି ଦାରୁଣ କଷ୍ଟ ଭୋଗ କରନ୍ତି ତାହା ବର୍ଣ୍ଣନା କରିବା ବେଳେ ଭୟରେ ଲୋମମୂଳ ଟାଙ୍କୁରି ଉଠେ । ପରମାଣୁ

ବୋମା ପ୍ରୟୋଗ ଦ୍ୱାରା ଘରଦ୍ୱାର ସମଗ୍ର ଅଞ୍ଚଳ ଶ୍ମଶାନରେ ପରିଣତ ହୁଏ । ନିକଟସ୍ଥ ଲୋକେ ତତ୍‌କ୍ଷଣାତ୍ ମୃତ୍ୟୁବରଣ କରିଥାନ୍ତି ।

ମାତ୍ର ଏବେ ଜୀବାଣୁବୋମା, ରାସାୟନିକ ବୋମା ପ୍ରୟୋଗ ଫଳରେ ଘରଦ୍ୱାର କୋଠାବାଡ଼ି ଅକ୍ଷତ ରହୁଥିଲେ ମଧ୍ୟ ନିରୀହ ସାଧାରଣ ପିଲା, ସ୍ତ୍ରୀ, ପୁରୁଷ କିପରି ଛଟପଟ ହୋଇ ଚିତ୍କାର କରି ମୃତ୍ୟୁବରଣ କରିଥାନ୍ତି ତାହା ଆଲୋଚନା କଲେ ଯେ କୌଣସି ସଭ୍ୟ ମଣିଷ ଯେ ମଣିଷକୁ ମାରିବା ପାଇଁ ଏତେ ହୀନ ଓ ଜଘନ୍ୟ କାର୍ଯ୍ୟ କରିପାରେ ତାହା ବିଶ୍ୱାସ କରି ହେବ ନାହିଁ ।

ପ୍ରଥମ ବିଶ୍ୱଯୁଦ୍ଧ ପରେ ଏକ ସ୍ୱତନ୍ତ୍ର ରାଷ୍ଟ୍ର ରୂପେ ସ୍ୱୀକୃତ ପ୍ରାୟ ୧୬୭,୯୨୫ ବର୍ଗ ମାଇଲ ପରିମିତ ଅଞ୍ଚଳକୁ ଇରାକ କୁହାଯାଏ । ଏହି ଦେଶର ଦୁଇଟି ନଦୀ ଟାଇଗ୍ରିସ୍ ଓ ଇଉଫ୍ରେଟସ ମଧ୍ୟବର୍ତ୍ତୀ ସମତଳ ଓ ଉର୍ବର ଅଞ୍ଚଳ ବ୍ୟତୀତ ଅନ୍ୟାନ୍ୟ ଅଞ୍ଚଳ ମରୁଭୂମିରେ ପୂର୍ଣ୍ଣ ଓ ଅନୁର୍ବର । ଲୋକମାନେ ଆରବୀ ଓ ମୁସଲମାନ । ଖଜୁରୀ କୋଳର ଦେଶ ରୂପେ ଏହା ବିଶ୍ୱ ପ୍ରସିଦ୍ଧ । ଲୋକସଂଖ୍ୟା ପ୍ରାୟ ୧ କୋଟି ୩୦ ଲକ୍ଷ । ପୃଥିବୀର ତେଲ ରପ୍ତାନିକାରୀ ଦେଶମାନଙ୍କ ମଧ୍ୟରୁ ଇରାକ ଅନ୍ୟତମ । ତେଲ ହିଁ ଏହି ଦେଶର ଅର୍ଥନୀତିର କର୍ଣ୍ଣଧାର । ୧୯୨୧ ମସିହାରେ ଇରାକ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ସ୍ୱୀକୃତ ହୋଇଥିଲା ଓ ମକ୍‌କା ସରିଫଙ୍କ ପୁତ୍ର ତଥା ଆରବୀ ନେତା ଫଇସଲଙ୍କ ମୃତ୍ୟୁ ପର୍ଯ୍ୟନ୍ତ ୧୯୩୩ ମସିହା ଯାଏ ଏହାର ଶାସକ ଥିଲେ । ଏହାର ସୈନ୍ୟବାହିନୀ ଦ୍ୱାରା ଦେଶର ଶାସନ କାର୍ଯ୍ୟ ନିୟନ୍ତ୍ରିତ ହୋଇଥିଲା ଏବଂ ୧୯୫୦ ବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ତେଲ ସମ୍ପଦ ଏହି ଦେଶର ଅର୍ଥନୀତିକୁ ବଦଳାଇ ଦେବାରୁ ଏହା ବିଶ୍ୱର ଏକ ବିକାଶଶୀଳ ରାଷ୍ଟ୍ରରୂପେ କ୍ରମେ ଉନ୍ନତ ପଥରେ ଆଗେଇ ଚାଲିଥିଲା ।

ସେହିପରି ୧୯୦୦ ଖ୍ରୀଷ୍ଟାବ୍ଦରୁ ଏକ ସ୍ୱତନ୍ତ୍ର ରାଷ୍ଟ୍ରରୂପେ ସ୍ୱୀକୃତ ଏବଂ ୧୯୭୯ ମସିହାଯାଏ ଇରାନର ଶାହା ସମ୍ରାଟ ରେଜା ପହ୍ଲବୀଙ୍କଦ୍ୱାରା

ଶାସନାଧୀନ ଇରାନ ମଧ୍ୟ କ୍ରମାଗତ ତୈଳ ସମ୍ପଦକୁ ନେଇ ଅନ୍ୟାନ୍ୟ ପାଶ୍ଚାତ୍ୟ ଦେଶଙ୍କ ସହିତ ଅନୁସରଣ କରି ପ୍ରଗତି ପଥରେ ଆଗେଇ ଚାଲିଥିଲା । ୬୩୬,୦୦୦ ହଜାର ବର୍ଗ ମାଇଲ ପରିମିତ ଅଞ୍ଚଳ ହିଁ ଇରାନ ରୂପେ ପରିଚିତ । ବିଶ୍ୱର ପେଟ୍ରୋଲ ଉତ୍ପାଦନକାରୀ ପ୍ରଧାନ ଦେଶମାନଙ୍କ ମଧ୍ୟରେ ଏହା ଅନ୍ୟତମ । ବାର୍ଷିକ ପ୍ରାୟ ୧୪୦,୦୦୦,୦୦୦ ଟନ ପେଟ୍ରୋଲଧୂମ ଏହି ଦେଶରୁ ଉତ୍ପାଦିତ ହୋଇଥାଏ । ଇରାକ ଭଳି ତୈଳ ମଧ୍ୟ ଏହି ଦେଶର ଅର୍ଥନୀତିର ପଥପ୍ରଦର୍ଶକ । ଲୋକସଂଖ୍ୟା ପ୍ରାୟ ୩ କୋଟି ୫୨ ଲକ୍ଷ ।

ଶାହା ରେଜା ପହ୍ଲବୀଙ୍କ ଅମଳରେ ପାଶ୍ଚାତ୍ୟ ସଭ୍ୟତା ଦ୍ୱାରା ପ୍ରଭାବିତ ଇରାନ ଗତ ୧୯୭୯ ମସିହାରେ ମୁସଲମାନ ଧର୍ମଗୁରୁ ଆୟତୋଲ୍ଲା ଖୋମିନିଙ୍କ ଦ୍ୱାରା ଅଧିକୃତ ହୋଇଥିଲା ଏବଂ ଖୋମିନି ଶାହାଙ୍କୁ ବିତାଡ଼ିତ କରି ନିଜେ ଶାସନଗାଦିରେ ଆସୀନ ହେବା ଦିନ-ଠାରୁ ଇରାନ ଆକାଶରେ କଳାମେଘ ଘୋଟି ଆସିଛି । ପ୍ରଥମେ ଖୋମିନି ହଜାର ହଜାର ଶାହା ସମର୍ଥକଙ୍କୁ ଫାଶି ଦେଇ ଯେପରି ନିର୍ମମ ଭାବରେ ହତ୍ୟା କଲେ ତାହା ପୃଥିବୀ ଇତିହାସରେ ବିରଳ । ଏହାପରେ ୧୯୮୦ ମସିହା ଠାରୁ ଇରାନ ଓ ଇରାକ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ସେହି ଯୁଦ୍ଧ ଆଜିଯାଏ ଚାଲୁରହି ଉଭୟ ଦେଶର ପ୍ରଭୂତ ସମ୍ପଦ ସାଙ୍ଗକୁ ବହୁ ଜୀବନ ନଷ୍ଟ କରି ସାରିଲାଣି । ବିଶ୍ୱବାସୀ ତଥା ମିଳିତ ଜାତିସଂଘର ବହୁ ଅନୁରୋଧ ସତ୍ତ୍ୱେ ଉଭୟପକ୍ଷ ଯୁଦ୍ଧ ବନ୍ଦ କରିବା ପରିବର୍ତ୍ତେ ଯୁଦ୍ଧ ବଢ଼ାଇବାର ଅବସ୍ଥା ଦେଖାଦେଇଛି ଏବଂ କ୍ରମେ ଉଭୟ ଦେଶ ଶ୍ମଶାନରେ ପରିଣତ ହେବା ଅବସ୍ଥାକୁ ଆସିଲାଣି । ବିଶ୍ୱରେ ନିର୍ମିତ ହୋଇଥିବା ବହୁ ମାରାତ୍ମକ ମାରଣାସ୍ତ୍ରର ପରୀକ୍ଷାସ୍ଥଳୀ ରୂପେ ବିବେଚିତ ହୋଇ ଏଠାରେ ଯେପରି ପ୍ରତିଦିନ ଯୁଦ୍ଧର ତାଣ୍ଡବଲୀଳା ଚାଲିଛି ତାହା ଅତ୍ୟନ୍ତ ଭୟପ୍ରଦ ତଥା ଲୋମହର୍ଷଣକାରୀ ।

ଏବେ କ୍ଷେପଣାସ୍ତ୍ର ଯୁଦ୍ଧ ଆରମ୍ଭ ହେବା ଫଳରେ ପ୍ରତିଦିନ ଶହ ଶହ ନିରୀହ ଲୋକ, ବହୁ ଘରଦ୍ୱାର, କୋଠାବାଡ଼ି, ଜୀବଜନ୍ତୁ ଅତି

ଦସ୍ତୁମାସ୍ତୁ ଭାବରେ ପ୍ରାଣତ୍ୟାଗ କରୁଛନ୍ତି । ବହୁ ବିଦେଶୀ ଦୂତାବାସର କର୍ମକର୍ତ୍ତାମାନେ ସେମାନଙ୍କ ଦେଶର କର୍ମଚାରୀଙ୍କୁ ନିଜ ଦେଶକୁ ଏହି ଯୁଦ୍ଧ ବିଭୀଷିକା ଫଳରେ ଫେରାଇ ନେଲେଣି ।



ଅତି ମାରାତ୍ମକ ରାସାୟନିକ ଅସ୍ତ୍ର ପ୍ରୟୋଗ ଏହି ଯୁଦ୍ଧରେ ଏକ ବିଶେଷ ଘଟଣା । ଇରାନ ପକ୍ଷରୁ ଅଭିଯୋଗ କରାଯାଇଛି ଯେ ଇରାକ ପକ୍ଷରୁ ପ୍ରଥମେ ରାସାୟନିକ ଅସ୍ତ୍ର ବ୍ୟବହାର କରାଯାଇ ବହୁ ବେସାମରିକ ଲୋକଙ୍କୁ ମୃତ୍ୟୁମୁଖରେ ଠେଲାଇଛି । ୧୯୮୦ ମସିହା ଜାନୁୟାରୀ ୩୦ ତାରିଖରେ ପ୍ରଥମେ ଇରାକ ପକ୍ଷରୁ ଏହି ଅସ୍ତ୍ର ବ୍ୟବହାର କରାଯିବା ଫଳରେ ହେଲାଲେ ଓ ନେ-ଖାଜର ମଧ୍ୟବର୍ତ୍ତୀ ଅଞ୍ଚଳରେ ପ୍ରାୟ ୭ ଜଣ ଇରାନୀ ଯୋଦ୍ଧା ମୃତ୍ୟୁବରଣ କରିଥିଲେ ଏବଂ ବହୁ ସୈନ୍ୟ ଆହତ ହୋଇଥିଲେ । ୧୯୮୨ ମସିହାରେ ୧୧ ଥର ରାସାୟନିକ ଅସ୍ତ୍ର ସାହାଯ୍ୟରେ ଇରାକ ଇରାନ ଉପରେ ଆକ୍ରମଣ କରି ବହୁ ଜୀବନ ନଷ୍ଟ କରିଥିଲା ବୋଲି ଇରାନ ଅଭିଯୋଗ କରିଛି । ୧୯୮୩ ଫେବ୍ରୁୟାରୀ ୨୨ ତାରିଖ ଓ ୧୯୮୪ ମସିହାରେ ମଧ୍ୟ ଏହି ଅସ୍ତ୍ର ପ୍ରୟୋଗ ୩୧ ଥର ଇରାକ ପକ୍ଷରୁ ଜାରି କରାଯାଇଥିଲା । ୧୯୮୩ ଅଗଷ୍ଟ ୯ ତାରିଖରେ ଏହି ଅସ୍ତ୍ର ଆକ୍ରମଣ ଫଳରେ ୧୭୦ ଜଣ ଲୋକ ଗୁରୁତର ଆହତ ହୋଇଥିଲେ ।

ଇରାନର ଡାକ୍ତର ନାସିର ଜଲାଲୀ ମତପ୍ରକାଶ କରିଛନ୍ତି ଯେ ରାସାୟନିକ ଆକ୍ରମଣବେଳେ ଏକ ରାସାୟନିକ ଗ୍ୟାସ ଭର୍ତ୍ତି ହୋଇଥିବା ଗ୍ୟାସ ସିଲିଣ୍ଡରକୁ ବିମାନରୁ ତଳକୁ ଛାଡ଼ି ଦିଆଯାଇଥାଏ । କିଛି ସମୟ ପରେ ଧୂଆଁ ପରି ଗ୍ୟାସ ଏଥିରୁ ନିର୍ଗତ ହୋଇ ଚତୁଃପାର୍ଶ୍ୱରେ ବ୍ୟାପିଯାଏ ଏବଂ ଏହି ଗ୍ୟାସ ସଂସ୍ପର୍ଶରେ ଆସି ଲୋକେ ତତ୍‌କ୍ଷଣାତ୍ ବାନ୍ତି, ଆଖି-ପୋଡ଼ା, କାଶ, ଭୋକ ମରିଯିବା ଓ ପୋଡ଼ିହୋଇ ଫୋଟକା ହେବା ରୋଗରେ ଆକ୍ରାନ୍ତ ହୁଅନ୍ତି । ଶରୀରରୁ ଚମଡ଼ା ଉତୁରିଯାଇ ଶରୀର ସିଝିଯାଏ । ବହୁ ଲୋକ ଅକାଳ ମୃତ୍ୟୁମୁଖରେ ପଡ଼ନ୍ତି, ଅନେକ ମର୍ମନ୍ତୁଦ କଷ୍ଟ ସହି ଛଟପଟ ହୋଇ ମୃତ୍ୟୁବରଣ କରିଥାନ୍ତି ।

ସିଲିଣ୍ଡର ମଧ୍ୟରେ ଭର୍ତ୍ତି ହୋଇ ରହିଥିବା ଏହି ଗ୍ୟାସ ହେଉଛି ନାଇଟ୍ରୋଜେନ ମଷ୍ଟାର୍ଡ ବା "ମଷ୍ଟାର୍ଡ ଗ୍ୟାସ" ବା ନାଇଟ୍ରୋନିକସ ନାମକ ରାସାୟନିକ ପଦାର୍ଥ । 'ବାଘ କାମୁଡ଼ାଠାରୁ ବାଘ ଢୋସରା ବାଧେ' ନୀତିରେ ଯେଉଁମାନେ ଏହି ଗ୍ୟାସଦ୍ୱାରା ଆକ୍ରାନ୍ତ ହୋଇ ମରି-

ଯାଆନ୍ତି ସେମାନେ କମ କଷ୍ଟ ପାଇଥାଆନ୍ତି । ମାତ୍ର ଯେଉଁମାନେ ଏହି ଗ୍ୟାସ ଦ୍ୱାରା ଆକ୍ରାନ୍ତ ହୋଇ ବଞ୍ଚିରହନ୍ତି ସେମାନେ ଜୀବନସାରା ବିକଳାଙ୍ଗ ହୋଇ ଅସହ୍ୟ କଷ୍ଟଭୋଗ କରିଥାନ୍ତି ।

୧୯୮୩ ଅକ୍ଟୋବର ୨୧, ୨୩, ୨୫ ଓ ୨୮ ତାରିଖ ଦିନ ଇରାକ ପକ୍ଷରୁ ଇରାନର ବହୁ ଗ୍ରାମାଞ୍ଚଳରେ ଏହି ଗ୍ୟାସ ସିଲିଣ୍ଡର ଫିଙ୍ଗାଯାଇ ବହୁ ନିରୀହ ଲୋକଙ୍କୁ ମାରିଦିଆଯାଇଥିବାର ଅଭିଯୋଗ ହୋଇଛି । ୧୯୮୪ ମସିହାରେ ହୋଇଥିବା ଗ୍ୟାସ ଆକ୍ରମଣରେ ୨୭୦୦ ଲୋକ ବିକଳାଙ୍ଗ ଓ ପ୍ରାୟ ୧୦୦ ଲୋକ ମୃତ୍ୟୁମୁଖରେ ପଡ଼ିଥିବାର ଜଣାଯାଏ । ୧୯୮୪ ଫେବୃୟାରୀ ୨୬ ଓ ୨୭ ତାରିଖରେ ଇରାନୀ ସୈନ୍ୟ ଛାଉଣି ଉପରେ ରାସାୟନିକ ଅସ୍ତ୍ର ଆକ୍ରମଣ ଫଳରେ ୧୧୦୦ ଇରାନୀ ସୈନ୍ୟ ଗୁରୁତର ଆହତ ହୋଇଥିଲେ । ଆହତମାନଙ୍କ ମଧ୍ୟରୁ



(ରସାୟନିକ ଅସ୍ତ୍ରର ଶୀକାର ହୋଇଥିବା ଏକ ବ୍ୟକ୍ତିର ମୁଖମଣ୍ଡଳ)

ଅନେକ ଚକ୍ଷୁ ହରାଇଥିଲେ । ଏବେ ସୁଦ୍ଧା ଏହି ବିଷାକ୍ତ ମାରାତ୍ମକ ଗ୍ୟାସ ପ୍ରଭାବରେ ଆକ୍ରାନ୍ତ ହୋଇ ମୃତ୍ୟୁ ସହିତ ସଂଗ୍ରାମ କରି ବହୁ ଲୋକ ସୁଇଡ଼େନ, ଅଷ୍ଟ୍ରିଆ, ଜାପାନ, ଇଂଲଣ୍ଡ, ପଶ୍ଚିମ ଜର୍ମାନୀ, ସୁଇଜରଲ୍ୟାଣ୍ଡ, ବେଲଜିୟମ, ହଲଣ୍ଡ, ଫ୍ରାନ୍ସ ପ୍ରଭୃତି ଦେଶର ବିଭିନ୍ନ ଡାକ୍ତରଖାନାରେ ଚିକିତ୍ସିତ ହେଉଛନ୍ତି ।

ଏହି ଆକ୍ରମଣ ପରେ ଜାତିସଂଘର ପ୍ରତିନିଧି ଦଳ ଘଟଣାସ୍ଥଳ ପରିଦର୍ଶନ କରି ଉଭୟ ଦେଶକୁ ଏପ୍ରକାର ମାରାତ୍ମକ ଅସ୍ତ୍ର ପ୍ରୟୋଗରୁ କ୍ଷାନ୍ତ ହେବାକୁ ଅନୁରୋଧ କରିଛନ୍ତି । ବ୍ରିଟେନ ଓ ଫ୍ରାନ୍ସ ଏହି ଉଭୟ ଦେଶକୁ ରାସାୟନିକ ଅସ୍ତ୍ର ବିକ୍ରୀ ବନ୍ଦ କରି ଦେଇଛନ୍ତି । ୧୯୨୫ ମସିହାରେ ଜେନେଭାଠାରେ ରାସାୟନିକ ଅସ୍ତ୍ର ବ୍ୟବହାର ପ୍ରତି ଯେଉଁ ନିଷେଧାଦେଶ ଜାରି କରାଯାଇଥିଲା, ତାହାକୁ ବର୍ତ୍ତମାନ କୌଣସି ଦଳ ମାନିବାକୁ ପ୍ରସ୍ତୁତ ନୁହଁନ୍ତି । ଇରାନ ଉପରେ ଇରାକ ରାସାୟନିକ ଅସ୍ତ୍ର ପ୍ରୟୋଗ କରିଛି ବୋଲି ଜାତିସଂଘ ବିଶେଷଜ୍ଞମାନେ ମତ ଦେଇଛନ୍ତି । ଇରାକ ପକ୍ଷରୁ ଏହି ମାରାତ୍ମକ ଅସ୍ତ୍ର ପ୍ରୟୋଗ କରାଯାଇ ନିରୀହ ଲୋକଙ୍କୁ ଯେପରି ମରଣ ମୁହଁକୁ ଠେଲି ଦିଆଯାଉଛି ତା ବିରୋଧରେ ସୁଇଡ଼େନ, ଇଂଲଣ୍ଡ, ଆମେରିକା, ଜର୍ମାନୀ ପ୍ରଭୃତି ଦେଶର ଲୋକମାନେ ଗଭୀର ଉଦ୍‌ବେଗ ପ୍ରକାଶ କରିଛନ୍ତି । ଏହି ଅସ୍ତ୍ର ଆକ୍ରମଣରେ ଇରାନ ବାଚସ୍ପତିଙ୍କ ପୁଅ ଓ ସୁପ୍ରିମ କୋର୍ଟ ବିଚାରପତିଙ୍କ ପୁଅ ମଧ୍ୟ ଗୁରୁତରଭାବେ ଆହତ ହୋଇଛନ୍ତି ଏବଂ ହଜାର ହଜାର ଲୋକ ଆତଙ୍କିତ ଅବସ୍ଥାରେ ଅଛନ୍ତି ।

ସାରା ବିଶ୍ୱରେ ଏହି ଅସ୍ତ୍ର ପ୍ରୟୋଗ ଉପରେ ବର୍ତ୍ତମାନ ଗଭୀର ଉଦ୍‌ବେଗ ସୃଷ୍ଟି ହୋଇଛି । ୧୯୮୭ ଅକ୍ଟୋବର ୭ ତାରିଖରୁ ୯ ତାରିଖଯାଏ ଆମେରିକାର ଜାତୀୟ ବିଜ୍ଞାନ ଏକାଡେମୀ, ଅସ୍ତ୍ରନିୟନ୍ତ୍ରଣ ଓ ନିରସ୍ତ୍ରୀକରଣ ସଂକ୍ରାନ୍ତ କାନାଡ଼ା କେନ୍ଦ୍ରର ଉଦ୍ୟୋଗରେ ରାସାୟନିକ ଅସ୍ତ୍ରକୁ ନିଷେଧ କରିବା ପାଇଁ କାନାଡ଼ାର ରାଜଧାନୀ ଅଟାଓ୍ୱାଠାରେ ଏକ ସମ୍ମିଳନୀ ଅନୁଷ୍ଠିତ ହୋଇ ଏହି ଅସ୍ତ୍ରର ସଂପୂର୍ଣ୍ଣ ବିଲୋପ ସାଧନ



(ରସାୟନିକ ଅସ୍ତ୍ରର ଶୀକାର ହୋଇଥିବା ଜଣେ ବ୍ୟକ୍ତି)

ପାଇଁ ମତପ୍ରକାଶ ପାଇଥିଲ । ପଶ୍ଚିମ ଜର୍ମାନୀ ଗୃନସେଲର ହେଲମୁଟ କୋହଲ ଅ.ମେରିକାର ରାଷ୍ଟ୍ରପତି ରେଗନଙ୍କୁ ଅନୁରୋଧ କରିଥିଲେ ଯେ ସେ ବିଶ୍ୱରୁ ଏହି ମାରାତ୍ମକ ଗଣବିଧ୍ୱଂସି ଅସ୍ତ୍ର ବିଲୋପ ପାଇଁ ତଦାରଖର ସମସ୍ତ ବ୍ୟବସ୍ଥା କରନ୍ତୁ । ଯେଉଁସବୁ କାରଖାନା ଏସବୁ ବିଷାକ୍ତ ଗ୍ୟାସ ଉତ୍ପାଦନ କରୁଛନ୍ତି ତାହା ଉପରେ ତଦାରଖ ବ୍ୟବସ୍ଥା ଲାଗୁ କରାଯିବାର ଉଦ୍ୟମ ହେଉଛି । କିନ୍ତୁ କେତେକ ପାଶ୍ଚାତ୍ୟ ଦେଶକୁ ଏପରି ବ୍ୟବସ୍ଥା ସୁହାଉ ନାହିଁ । ବ୍ରିଟେନ ଓ ମିତ୍ରଗୋଷ୍ଠୀ ରାଷ୍ଟ୍ର କେବଳ ରାଷ୍ଟ୍ରାୟତ୍ତ ରାସାୟନିକ ଉଦ୍ୟୋଗଗୁଡ଼ିକୁ ପରିଦର୍ଶନ ପାଇଁ ଏକମତ ହୋଇଛନ୍ତି । ଛୁଟ ଏବଂ ସର୍ତ୍ତ ମାନ ନେବାକୁ ରାଜି ହୋଇଛି । ମାତ୍ର ଏହା ଆଜଯାଏ କାର୍ଯ୍ୟକାରୀ ହୋଇନାହିଁ ।

ବର୍ତ୍ତମାନ ବିଶ୍ୱର ଅବସ୍ଥା ଯେପରି ରୂପ ନେଲଣି ରାସାୟନିକ ଅସ୍ତ୍ରଶସ୍ତ୍ର ବିଭିନ୍ନ ଦେଶ ନିକଟରେ ଗଚ୍ଛିତ ଥିବାଯାଏ ଏବଂ ଏହାର ଉତ୍ପାଦନ ବନ୍ଦ ନ ହେବାଯାଏ ଏହା ମାନବସମାଜ ଆଗରେ ଭବିଷ୍ୟତରେ ଏକ ପ୍ରଳୟଙ୍କରୀ ଅବସ୍ଥା ସୃଷ୍ଟି କରିବ । ବର୍ତ୍ତମାନ ବିଭିନ୍ନ ପ୍ରକାର ମାରଣାସ୍ତ୍ର ଆମକୁ ଗ୍ରାସିଆଣୁ ଘେରି ରହିଥିବା ପରି ମନେ ହେଉଛି । ଏସବୁ ମନୁଷ୍ୟକୃତ ଦୁର୍ବିପାକ ଓ ଯନ୍ତ୍ରଣାରୁ କଣ ମନୁଷ୍ୟର ମୁକ୍ତି ନାହିଁ ?



# ବୟସ୍କଙ୍କ ପୃଥିବୀ

ଇଂରାଜୀରେ ଗୋଟିଏ କଥା ଅଛି—"**Old is Gold**" "ବୟସ୍କ ବୃଦ୍ଧ ଲୋକ ସୁନାପରି ସବୁବେଳେ ତେଜବାନ" । ବିଶ୍ୱବିଖ୍ୟାତ ଲେଖକ **Leonard Wright** (ଲିଓନାର୍ଡ଼ ରାଇଟ) ଥରେ କହିଥିଲେ, "**As old wood is best to burn, old horse to ride, old books to read, and old wine to drink, so are old friends always most trusty to use.**" ପୁରୁଣା କାଠ ଜଳିବା ପାଇଁ ଉତ୍ତମ, ପୁରୁଣା ଘୋଡ଼ା ଚଢ଼ିବା ପାଇଁ ପ୍ରସିଦ୍ଧ, ପୁରାତନ ପୁସ୍ତକର ମୂଲ୍ୟ ଅଧିକ, ସେହିପରି ପୁରୁଣା ମଦର ସ୍ୱାଦ ସ୍ୱତନ୍ତ୍ର, ସବୁଠାରୁ ବଳୀ ପୁରୁଣା ସାଙ୍ଗର ସାହାଚର୍ଯ୍ୟ ସବୁଠାରୁ ଅଧିକ । ତେଣୁ ପୁରାତନ ପଦାର୍ଥ ବା ଯେ କୌଣସି ପୁରୁଣା ଜିନିଷ, ପଦାର୍ଥ, ଜୀବ ବା ମାନବର ଏକ ସ୍ୱତନ୍ତ୍ରତା ରହିଛି ।

ଆମେ ଅତୀତର ଇତିହାସ ପର୍ଯ୍ୟାଲୋଚନା କଲେ ଅତୀତର ରାଜଦରବାରରେ, ରାଜ୍ୟ ଶାସନରେ, ପଣ୍ଡିତ ସଭାରେ, ଯୁଦ୍ଧ କ୍ଷେତ୍ରରେ ତଥା ଯେ କୌଣସି ଗୁରୁତ୍ୱପୂର୍ଣ୍ଣ ଅସାଧ୍ୟ କାର୍ଯ୍ୟବେଳେ ବୁଢ଼ା ବୁଢ଼ୀ ଲୋକମାନଙ୍କ ଉପଦେଶକୁ ସମସ୍ତେ ଗ୍ରହଣ କରୁଥିଲେ ଏବଂ ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ସଫଳ ହେଉଥିବାର ବହୁ ନଜିର ରହିଛି । ମାତ୍ର ଆଜକାଲି ଯୁଗରେ ଅବସ୍ଥା କଣ ? ବୁଢ଼ା ଲୋକମାନଙ୍କର ଦୀର୍ଘ ଦିନର ଜୀବନର ଅଭିଜ୍ଞତାକୁ ସ୍ୱୀକୃତି ଦେବାକୁ ଆଜି ଯେପରି କେହି ରାଜି ନୁହଁନ୍ତି । ଆଜି ବୃଦ୍ଧମାନେ ଯେପରି ସମାଜରେ ଅବହେଳିତ ଅଦରକାରୀ ଜୀବ ରୂପେ ପରିଗଣିତ ହେଲେଣି । ଆଧୁନିକ ଯୁଗର ଯୁବଗୋଷ୍ଠୀ ସେମାନଙ୍କ କଥାକୁ କର୍ଣ୍ଣପାତ କରୁନାହାଁନ୍ତି, ପରିଣାମରେ ବହୁ ଦୁଃଖ କଷ୍ଟ ଭୋଗ କରୁଛନ୍ତି—ଏହା ଯେ କୌଣସି ସଚେତନ ବ୍ୟକ୍ତି ଅନୁଭବ କରିପାରୁଥିବ ।

ମଣିଷ ତଥା ପ୍ରାଣୀମାନଙ୍କର ଜୀବନର ସବୁଠାରୁ ଦୁଃଖପୂର୍ଣ୍ଣ ସମୟ ହେଉଛି ବାର୍ଦ୍ଧକ୍ୟ । ଏହି ସମୟରେ ସେମାନଙ୍କୁ ପର ଉପରେ ସମ୍ପୂର୍ଣ୍ଣ ରୂପେ ନିର୍ଭର କରିବାକୁ ପଡ଼ିଥାଏ । ବୃଦ୍ଧମାନଙ୍କୁ ପୃଥିବୀର କେତେକ ଅଞ୍ଚଳରେ ସମାଜରେ ଅତି ଉଚ୍ଚ ସ୍ଥାନ ଦିଆଯାଇ ସମ୍ମାନ ଦିଆଯାଉଥିଲେ ମଧ୍ୟ ଅନ୍ୟ କେତେକ ସ୍ଥାନରେ ସେମାନଙ୍କୁ କେହି ପଚାରନ୍ତି ନାହିଁ । ଅବହେଳିତ ହୋଇ ସେମାନେ ସମାଜ, ରାଜନୈତିକ ଓ ସାମାଜିକ ବିଚାରଧାରା ଉପରେ ନିର୍ଭର କରି ଦୁଃଖରେ ସମୟ କଟାଇଥାନ୍ତି ।

ପୃଥିବୀର ଯେଉଁସବୁ ଅଞ୍ଚଳର ବୁଢ଼ା ଲୋକମାନଙ୍କ ହାତରେ ଗୃହଜମି, ଧନ ସମ୍ପତ୍ତି ଇତ୍ୟାଦି ଥାଏ ଏବଂ ଯୁବକମାନଙ୍କ ଉପରେ ସେମାନଙ୍କର ଆଧିପତ୍ୟ ଥାଏ ସେଠାରେ ବୁଢ଼ା ଲୋକମାନଙ୍କୁ ଯୁବକ-ମାନେ ଭୟ କରନ୍ତି ଏବଂ ତାଙ୍କ କଥା ମାନି ଚଳନ୍ତି । ପୃଥିବୀର ବିଭିନ୍ନ ଅଞ୍ଚଳର ବୟସ୍କ ଲୋକମାନଙ୍କୁ କିପରି ଭାବରେ ସମ୍ମାନ ବା ଅସମ୍ମାନ କରାଯାଏ ସେ ବିଷୟରେ ଆଲୋଚନା କଲେ ଜଣାଯାଏ—ଦକ୍ଷିଣ ଆମେରିକାର କଲମ୍ବିଆ ପ୍ରଭୃତି ଦେଶରେ ଜଙ୍ଗଲରେ ବାସ କରୁଥିବା ସିରିଓନା ଜାତିର ଲୋକମାନେ ଏକ ଆଦିମ ଜାତି । ଏହି ଜାତିର ଲୋକମାନଙ୍କର ଜମିଭୂମି ନାହିଁ । ଏମାନେ ଯେଉଁଠାରେ ରହନ୍ତି ସେଠାରେ ଚାଷ କରନ୍ତି ଓ ଫଳ ସଂଗ୍ରହ କରି ଖାଇ ପୁଣି ପରବର୍ଷକୁ ଅନ୍ୟ ସ୍ଥାନକୁ ଚାଲି ଯାଆନ୍ତି । ଯୁବକମାନେ ଏହି ଜାତିର ବୟସ୍କ ଲୋକମାନଙ୍କଠାରୁ କିଛି ବିଶେଷ ପଦାର୍ଥ ପାଆନ୍ତି ନାହିଁ, ଯାହାଫଳରେ କି ଏହି ବୟସ୍କ ବୃଦ୍ଧ ଲୋକମାନେ ଯୁବକମାନଙ୍କୁ ଯାହା ପରାମର୍ଶ ଦିଅନ୍ତି ତାହାକୁ କେହି ମାନନ୍ତି ନାହିଁ । ବୁଢ଼ା ଲୋକମାନେ ଯେତେବେଳେ କୌଣସି କାମ କରିପାରନ୍ତି ନାହିଁ, କିମ୍ବା ଶୀକାର କରିପାରନ୍ତି ନାହିଁ, ସେତେବେଳେ ସେମାନେ ଯୁବକମାନଙ୍କ ଉପରେ ଏକପ୍ରକାର ବୋଝ ହୋଇଯାଆନ୍ତି ।

କ୍ରମାଗତ ଭାବରେ ଏହି ଜାତିର ଲୋକମାନେ ଗୋଟିଏ ସ୍ଥାନରୁ

ଅନ୍ୟ ସ୍ଥାନକୁ ବର୍ଷ ପରେ ବର୍ଷ ସ୍ଥାନ ପରିବର୍ତ୍ତନ କରୁଥିବାରୁ ଶେଷରେ ଗୋଟିଏ ନିର୍ଛୁଟିଆ ସ୍ଥାନରେ ଏହି ବୁଢ଼ାଲୋକମାନଙ୍କୁ ଏକୁଟିଆ ଅତି ଅସହାୟ ଭାବରେ ମରିବାକୁ ଛାଡ଼ିଦେଇ ସମସ୍ତେ ଚାଲିଯାଆନ୍ତି । ବୁଢ଼ା-ଲୋକ ସେଠାରେ ନଖାଇ ନପିଇ ଶେଷରେ ପ୍ରାଣତ୍ୟାଗ କରେ ।

ଅବଶ୍ୟ ପୃଥିବୀର ସବୁ ଯାଯାବର ଆଦିମ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ଏହି ପ୍ରଥା ପ୍ରଚଳିତ ନାହିଁ । ଅଷ୍ଟ୍ରେଲିଆର ଆଦିମ ମାନବ ଟିଓ୍ୱିସା ଓ ଆବୋରିଜିନସ ମଧ୍ୟରେ ବୁଢ଼ାମାନେ ବହୁ ଶକ୍ତି ଓ ସମ୍ମାନର ଅଧିକାରୀ । ବୁଢ଼ା ଲୋକମାନେ ସ୍ତ୍ରୀଲୋକ, ବିବାହ ଏବଂ ବିବାହଇତ୍ୟାଦି କାର୍ଯ୍ୟରେ ମୁଖ୍ୟ ଅଂଶ ଗ୍ରହଣ କରୁଥିବାରୁ ସେମାନଙ୍କୁ ସମସ୍ତେ ଭୟ କରିଥାନ୍ତି ଏବଂ ସମ୍ମାନ ଦେଇଥାନ୍ତି ।

ଆଫ୍ରିକାର କଙ୍ଗୋ ଅଞ୍ଚଳରେ ଲିଲା ଶ୍ରେଣୀର ଅଧିବାସୀମାନେ ମଧ୍ୟ ବୟସ୍କ ଲୋକମାନଙ୍କ କନ୍ୟାଙ୍କୁ ବିବାହ କରିବାକୁ ସେମାନଙ୍କୁ ପ୍ରଚୁର ଅର୍ଥ, ପୋଷାକ ଦେଇ ସମ୍ମାନ ପ୍ରଦର୍ଶନ କରିଥାନ୍ତି ଏବଂ ବୁଢ଼ା ଲୋକଙ୍କୁ ସବୁବେଳେ ସମ୍ମାନ ଦେଇ ସେମାନଙ୍କର କଥା ମାନିଥାନ୍ତି । ଆଫ୍ରିକାର ଅଧିକାଂଶ ଅଞ୍ଚଳରେ ଲୋକେ ଯେଉଁଠାରେ ଏକାଠି ଗୃହ-ବାସ କରନ୍ତି ସେଠାରେ ବୁଢ଼ା ଲୋକମାନେ ବହୁ ସମ୍ମାନ ଓ ଶକ୍ତିର ଅଧିକାରୀ । ସେଠାରେ ଯୁବକ ଲୋକମାନଙ୍କର ଧାରଣା ଯେ ସେମାନେ ଚାଷ କରୁଥିବା ଜମିଭୂମି ପୂର୍ବ ପୁରୁଷମାନଙ୍କର ଏବଂ ବୁଢ଼ାଲୋକେ ପୂର୍ବପୁରୁଷଙ୍କ ପ୍ରତିନିଧି । ତେଣୁ ସେଠାରେ ସେମାନଙ୍କ କଥା ସମସ୍ତେ ମାନିଥାନ୍ତି ଓ ତାଙ୍କୁ ସମ୍ମାନ ଦେଇଥାନ୍ତି । ସେଠାର ଲୋକମାନଙ୍କର ଧାରଣା ଯଦି ସେମାନେ ବୁଢ଼ାଲୋକେ ବା ପୂର୍ବପୁରୁଷଙ୍କ ପ୍ରତିନିଧିଙ୍କୁ ଅସମ୍ମାନ କରିବେ ତେବେ ପୂର୍ବପୁରୁଷମାନେ ରାଗି ରୋଗ ବ୍ୟାଧି ପଠାଇବେ ଏବଂ ସେମାନେ ସମସ୍ତେ ରୋଗରେ ଆକ୍ରାନ୍ତ ହେବେ ।

ୟୁରୋପ ମହାଦେଶ ଅଞ୍ଚଳରେ ଅଜାତର ଅଭିଜ୍ଞତାରୁ ବୁଢ଼ା ଲୋକମାନଙ୍କୁ ସମ୍ମାନ ଦିଆଯାଇଥାଏ । ଷ୍ଟିର ସମାଜରେ ବୁଢ଼ାମାନଙ୍କୁ ସମ୍ମାନ ଅଧିକ ମିଳିଥାଏ ।

ଚୀନ, ଭାରତ ତଥା ୟୁରୋପରେ ପୂର୍ବେ ବୁଢ଼ା ଲୋକମାନଙ୍କ ମତକୁ ପ୍ରାଧାନ୍ୟ ଦିଆଯାଉଥିଲା ଏବଂ ସେମାନଙ୍କର ମତ ଅନୁସାରେ କାର୍ଯ୍ୟ କରାଯାଉଥିଲା । ଦରକାର ଥିବାରୁ କେତେକ ଲୋକେ ବୁଢ଼ା ଲୋକଙ୍କର ସାହାଯ୍ୟ ଲୋଡ଼ିଥାନ୍ତି । କାରଣ ବହୁ ଅତୀତ ଘଟଣା, ଅତୀତ ରୀତିନୀତି ସେମାନଙ୍କର ନଖ ଦର୍ପଣରେ ଥାଏ ।

ଭିଏତନାମର ପାର୍ବତ୍ୟ ଅଞ୍ଚଳରେ ରହୁଥିବା ଲୋକମାନେ ଗୋଟିଏ ସ୍ଥାନରେ ଜଙ୍ଗଲ ସଫାକରି କୃଷି କରିବା ପରେ ସେଠାରେ ମୃତ୍ତିକା ଅନୁର୍ବର ହେଲେ ସେ ସ୍ଥାନ ଛାଡ଼ି ଚାଲିଯାଆନ୍ତି ଏବଂ ୧୦।୧୨ ବର୍ଷ ପରେ ସେହି ସ୍ଥାନକୁ ପୁଣି ଫେରି ଆସନ୍ତି । ମାତ୍ର ସେହି ପୂର୍ବ ସ୍ଥାନକୁ ଜାଣିବାକୁ ବୁଢ଼ା ଲୋକମାନେ ସେମାନଙ୍କୁ ବାଟ ଦେଖାଇ ଦିଅନ୍ତି । ସେଥିପାଇଁ ସେମାନଙ୍କ ସମାଜରେ ବୁଢ଼ା ଲୋକେ କୌଣସି କାମ ନ କଲେ ମଧ୍ୟ ଖାଇବାକୁ ଦେଇ ସେମାନଙ୍କୁ ସାଙ୍ଗରେ ରଖାଯାଇ ଥାଏ ।

କେତେକ ସମାଜରେ ଅତୀତ ପୂର୍ବପୁରୁଷଙ୍କ ଇତିହାସ ବୁଢ଼ା ବୁଢ଼ା ଲୋକେ ଜାଣିଥିବାରୁ ସେମାନଙ୍କୁ ମଧ୍ୟ ସମ୍ମାନ ମିଳିଥାଏ । ପୃଥିବୀର ବିଭିନ୍ନ ଦେଶରେ ବିଶେଷ କରି ଆଫ୍ରିକା ପ୍ରଭୃତି ମହାଦେଶରେ ବୟସ୍କ ସ୍ତ୍ରୀ ଲୋକମାନଙ୍କର ପ୍ରାଧାନ୍ୟ ବେଶୀ । ସେମାନେ ଶ୍ରେଷ୍ଠ ଶ୍ରେଷ୍ଠ ପିଲା-ମାନଙ୍କୁ ରଖିବାରେ ସ୍ତ୍ରୀଲୋକମାନଙ୍କୁ ସାହାଯ୍ୟ କରିଥାନ୍ତି ।

ଏବେ ଆଧୁନିକ ପୃଥିବୀର ବହୁ ଦେଶରେ ବୃଦ୍ଧ ଲୋକମାନଙ୍କର ସୁଖ ସୁବିଧା ପାଇଁ ସରକାରଙ୍କ ତରଫରୁ ବହୁ କାର୍ଯ୍ୟକ୍ରମ କରାଯାଇଛି । କେତେକ ଦେଶରେ ଅସହାୟ ବୃଦ୍ଧ ଲୋକଙ୍କ ରହିବା ପାଇଁ ସ୍ୱତନ୍ତ୍ର ପାନ୍ଥନିବାସ ନିର୍ମାଣ କରାଯାଇଛି ଏବଂ ସ୍ୱତନ୍ତ୍ର ଭତ୍ତା ମଧ୍ୟ ସେମାନଙ୍କୁ ଦିଆଯାଉଛି । ମାତ୍ର ପୃଥିବୀର ବହୁ ଅଞ୍ଚଳରେ ବୟସ୍କ ଲୋକେ ଯେଉଁ ମାନଙ୍କୁ ଜନ୍ମ ଦେଇ ପୃଥିବୀ ପୃଷ୍ଠକୁ ଆଣିଲେ ସେହି ସନ୍ତାନ ସନ୍ତତିଙ୍କ ଦ୍ୱାରା ସେମାନେ ନିଷ୍ପେଷିତ, ଅବହେଳିତ ହୋଇ ରହି କାଳ କାଟୁଛନ୍ତି । ବିଂଶ ଶତାବ୍ଦୀର ଶେଷ ଭାଗରେ ବୃଦ୍ଧମାନଙ୍କର ବୟସ ଅଭିଜ୍ଞତାକୁ ଆଉ କେହି ସମ୍ମାନ ଦେବାଭଳି ଅବସ୍ଥାରେ ନଥିଲା ପରି ଜଣାପଡ଼ୁଛି ।

# ଜାପାନରେ ଭାଲେଣି

ଜାପାନ ତଥା ଅନ୍ୟାନ୍ୟ କେତେକ ୟୁରୋପୀୟ ଦେଶରେ ବୃଦ୍ଧ ଲୋକଙ୍କ ସଂଖ୍ୟା କ୍ରମାଗତ ଭାବରେ ବଢ଼ିବାରୁ ସେଠାର ସରକାରରେ ଭାଲେଣି ପଡ଼ିଗଲାଣି ଏବଂ ଏହା ଏହି ଦେଶର ଅର୍ଥନୀତି ଉପରେ ଚାପ ପକାଇବ ବୋଲି ମତପ୍ରକାଶ ପାଇଲାଣି । ଏହି ଶତାବ୍ଦୀର ଶେଷ ବେଳକୁ ଜାପାନରେ ୬୫ ବର୍ଷରୁ ଅଧିକ ବୟସର ଲୋକ ସଂଖ୍ୟା ୧୫ ଭାଗରୁ ୨୦ ଭାଗ ହେବ ଏବଂ ୨୦୨୨ ମସିହା ବେଳକୁ ଏହା ୨୨ ଭାଗରୁ ୨୫ ଭାଗ ବଢ଼ି ପ୍ରାୟ ସାଢ଼େ ୩ କୋଟି ହେବ ବୋଲି ଗଣନା କରାଯାଇ ସାରିଲାଣି । ଫଳରେ ଅକର୍ମଣ୍ୟ, କାମ କରିପାରୁ ନଥିବା ଲୋକଙ୍କ ସଂଖ୍ୟା ଜାପାନରେ ବହୁ ପରିମାଣରେ ବଢ଼ିଯିବ ଏବଂ ସରକାରଙ୍କୁ ଏକ ମୋଟା ଅଙ୍କର ଅର୍ଥ ଏହି ବୟସ୍କ ଲୋକଙ୍କ ଥଇଥାନ ଓ ପେନ୍‌ସନ୍ ଇତ୍ୟାଦି ବାବଦରେ ଖର୍ଚ୍ଚ କରିବାକୁ ପଡ଼ିବ । ୟୁରୋପର ଅନ୍ୟାନ୍ୟ ଦେଶଭଳି ଜାପାନରେ ଖର୍ଚ୍ଚ ବଢ଼ିଯିବ ଏବଂ ଏହାକୁ ଭରଣା କରିବାକୁ ଲୋକମାନଙ୍କ ଉପରେ ଅଧିକ କର ବସାଇବାକୁ ପଡ଼ିବ ବୋଲି ଏବେ ଜାପାନ ସରକାର ସ୍ଥିର କଲେଣି । କେତେକ ବିଶେଷଜ୍ଞ ମତ ଦେଇଛନ୍ତି ଯେ ଜାପାନର ଅର୍ଥନୀତି ଉପରେ ପଡ଼ୁଥିବା ଏହି ଚାପକୁ ସମ୍ଭାଳିବାକୁ ବୟସ୍କ ଲୋକମାନଙ୍କୁ ପେନ୍‌ସନ୍ ଦେବା ବୟସକୁ ବଢ଼ାଇ ଦିଆଯିବା ଉଚିତ । ନଚେତ ସୋସିଆଲ ସିକ୍ୟୁରିଟି ଟ୍ୟାକ୍‌ସକୁ ବଢ଼ାଇ ଦୁଇଗୁଣ କରିବାକୁ ପଡ଼ିବ ।

ହିଟୋଟୋସବାସୀ ବିଶ୍ୱବିଦ୍ୟାଳୟର ପ୍ରଫେସର ୟୁକିଓ ନୋଗୁଚି ବୟସ୍କ ଲୋକଙ୍କ ସଂଖ୍ୟା ଜାପାନରେ ଦ୍ରୁତ ଗତିରେ ବଢ଼ୁଥିବାରୁ ଏହା ଜାପାନ ପାଇଁ ଏକ ସମସ୍ୟା ସୃଷ୍ଟି କରିବ ବୋଲି ଚେତାବନୀ ଶୁଣାଇ ସାରିଲେଣି । ବର୍ତ୍ତମାନ ଜାପାନରେ ଥିବା ବୁଢ଼ା ବୁଢ଼ୀଙ୍କ ସଂଖ୍ୟା ଆସନ୍ତା ୪୦ ବର୍ଷ ଭିତରେ ତିନିଗୁଣ ବଢ଼ିଯିବ ଏବଂ ଏହା ଫଳରେ ଜାପାନର ବାର୍ଷିକ ଡାକ୍ତରୀ ଚିକିତ୍ସା ଖର୍ଚ୍ଚ ମଧ୍ୟ ୬

ଦଶମିକ ୭ଗୁଣ ବଢ଼ିଯିବ । ଏହା ଫଳରେ ଶ୍ରମିକଙ୍କ ସଂଖ୍ୟା ଜାପାନରେ କମିଯିବ ଏବଂ ସଞ୍ଚୟ ମଧ୍ୟ କମିଯିବ ।

ବର୍ତ୍ତମାନ ଜାପାନରେ ହାରାହାରି ପୁରୁଷମାନଙ୍କ ଜୀବନକାଳ ୧୯୮୫ ମସିହାରେ ୭୪ ବର୍ଷ ଥିବାବେଳେ ଶତାବ୍ଦୀ ଶେଷବେଳକୁ ୭୭ ଦଶମିକ ୭୪ ବର୍ଷ ହେବ ଏବଂ ମହିଳାମାନଙ୍କ ଜୀବନକାଳ ୧୯୮୫ରେ ୮୦ ଦଶମିକ ୪୦ ଥିବା ବେଳେ ଶତାବ୍ଦୀ ଶେଷ ବେଳକୁ ୨୦୨୫ ମସିହା ବେଳକୁ ଏହା ୮୩ ଦଶମିକ ୧୭ ବର୍ଷ ହେବ । ୧୯୮୫ ମସିହାରେ ବୁଢ଼ାମାନଙ୍କ ସଂଖ୍ୟା ୧୦ ଦଶମିକ ୩୦ ଥିବା ବେଳେ ୨୦୦୯ ବେଳକୁ ୨୦ଦଶମିକ ୪୪ ଏବଂ ୨୦୨୧ ବେଳକୁ ଏହା ୨୪ ଦଶମିକ ୭୨ ହେବ ।

ରୋଗାକ୍ରାନ୍ତ ଅକର୍ମଣ୍ୟ ବୁଢ଼ା ବୁଢ଼ୀଙ୍କ ସଂଖ୍ୟା ଜାପାନରେ ୧୯୮୫ରେ ୯ ଲକ୍ଷ ୭୦ ହଜାର ଥିବାବେଳେ ୨୦୦୪ ମସିହା ବେଳକୁ ଏହି ସଂଖ୍ୟା ବଢ଼ି ୧୩ ଲକ୍ଷ ୨୭ ହଜାର ହେବ ଏବଂ ୨୦୨୨ ମସିହା ବେଳକୁ ଏହା ୧୯ ଲକ୍ଷ ୭୭ ହଜାର ଓ ୨୦୨୫ ବେଳକୁ ୨୦ ଲକ୍ଷ ୨୫ ହଜାର ହେବ । ଏହା ଫଳରେ ଡାକ୍ତରୀ ଚିକିତ୍ସା ଖର୍ଚ୍ଚ ପ୍ରାୟ ୨୦୦୦ ମସିହା ବେଳକୁ ୪ଗୁଣ ବଢିଯିବ ।

ସେହିପରି ଯୁକ୍ତରାଷ୍ଟ୍ର ଆମେରିକାରେ ୨୦୫୦ ମସିହା ବେଳକୁ ଲୋକଙ୍କ ବଞ୍ଚିରହିବା ବୟସ ହାରାହାରି ବର୍ତ୍ତମାନ ଥିବା ୭୫ ବର୍ଷରୁ ବଢ଼ି ୮୫ ବର୍ଷ ହେବ ଏବଂ ବୁଢ଼ା ଲୋକଙ୍କ ସଂଖ୍ୟା ବହୁ ଗୁଣରେ ବୃଦ୍ଧି ପାଇବ ବୋଲି ହିସାବ କରାଯାଇ ସାରିଲାଣି ।

ବିଶେଷରେ ବର୍ତ୍ତମାନ ବହୁ ଔଷଧର ଉଦ୍ଭାବନ ପରେ ମୃତ୍ୟୁ ହାର କମିଯିବା ଫଳରେ ବୃଦ୍ଧ ବୃଦ୍ଧାଙ୍କ ସଂଖ୍ୟା ବହୁ ଗୁଣରେ ବଢ଼ିବାରେ ଲାଗିଥିବାରୁ ବର୍ତ୍ତମାନ ଭାରେଣୀ ପଡ଼ିଲାଣି । ୨୦୫୦ ମସିହା ବେଳକୁ ଆମେରିକାର ସମଗ୍ର ଲୋକସଂଖ୍ୟାର ୨୨ ଭାଗ ଲୋକଙ୍କ ବୟସ ୬୫ ବର୍ଷରୁ ଅଧିକ ହେବ ଏବଂ ଏହି ମାନଙ୍କ ସକାଶେ ଦେଶର ସମଗ୍ର ସ୍ୱାସ୍ଥ୍ୟ ଖର୍ଚ୍ଚର ମୋଟ ୪୦ ଭାଗ ଖର୍ଚ୍ଚ ହେବ ବୋଲି ହିସାବ କରି ଦେଖା ଗଲାଣି ।

ବୁଢ଼ା ନହୋଇ ଅନ୍ତତଃ କିଛି ଦିନ ସୁସ୍ଥ ଯୁଦର ସ୍ୱାସ୍ଥ୍ୟ ରକ୍ଷା କରିବାପାଇଁ ବର୍ତ୍ତମାନ ବହୁ ନୂତନ ଔଷଧର ଉଦ୍ଭାବନ ହେଲାଣି । ବୃଦ୍ଧ ବୟସ ପାଇଁ ଦାୟୀ ମାଂସପେଶୀ, ଲୋଚ୍ଚି ହୋଇ ଯାଉଥିବା ଚର୍ମ, ମସ୍ତିଷ୍କର ବୟସ ବୃଦ୍ଧି, ହାଡ଼ର ସ୍ଥିରତା, ରୋଗ ପ୍ରତିରୋଧ ଇତ୍ୟାଦି ପାଇଁ ବର୍ତ୍ତମାନ ବିଭିନ୍ନ ବ୍ୟାୟାମ ଓ ବହୁ ନୂତନ ଔଷଧ ବାହାରିବା ଦ୍ୱାରା କ୍ରମେ ମଣିଷର ଆୟୁ ବଢ଼ିବାରେ ଲାଗିଛି । ଗତ କିଛି ଦିନ ତଳେ ଜର୍ମାନୀର ଫ୍ରାଂକଫୁର୍ଟ ଠାରେ ବୃଦ୍ଧ ବୟସରେ କର୍ମଚଞ୍ଚଳ ବିଷୟରେ ଏକ ଆନ୍ତର୍ଜାତିକ ଆଲୋଚନା ଚକ୍ର ହୋଇ କିପରି ମଣିଷ ଏହି ସମୟରେ ଚଳଚଞ୍ଚଳ ହୋଇ ରହିବ ସେ ବିଷୟରେ ଗମ୍ଭୀର ଭାବେ ଆଲୋଚନା ହୋଇଯାଇଛି ଏବଂ ଏଥିରେ ମତ ପ୍ରକାଶ ପାଇଛି ଯେ, **"When one is old, one must do more than when one was young."** ବୃଦ୍ଧ ବୟସରେ ପ୍ରଚୁର ଲେଖାଲେଖି କରି ସମୟ ଅତିବାହିତ କରିବାକୁ କେତେକ ଏହି ସମ୍ମିଳନୀରେ ମତପ୍ରକାଶ କରିଛନ୍ତି ।

କେବଳ ଜାପାନ ନୁହେଁ, ବୟସ୍କ ଲୋକଙ୍କ ସଂଖ୍ୟା ବୃଦ୍ଧି ବର୍ତ୍ତମାନ ବହୁ ଦେଶରେ ସମସ୍ୟା ସୃଷ୍ଟି କରିବାକୁ ଯାଉଛି । ସେମାନଙ୍କୁ କିପରି ଥଇଥାନ କରାଯିବ ଏହା ଏହିସବୁ ଦେଶର ସରକାରଙ୍କର ଚିନ୍ତାର ବିଷୟ ହେଲାଣି । ଦିନ ଥିଲା ଯେତେବେଳେ ବୁଢ଼ା ବୁଢ଼ୀ ଲୋକମାନଙ୍କୁ ବହୁ ସମ୍ମାନ ମିଳୁଥିଲା । ସେମାନଙ୍କର ଅଭିଜ୍ଞତାକୁ ସମସ୍ତେ ସମ୍ମାନ ଦେଉଥିଲେ ଏବଂ ସେମାନେ ବହୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଅବସ୍ଥାପିତ ହୋଇ ପରାମର୍ଶ ଦେଉଥିଲେ । ମାତ୍ର ଏବେ ବୟସ୍କମାନେ ଆଧୁନିକ ସଭ୍ୟ ସମାଜ ଉପରେ ବୋଝ ଭଳି ଦେଖା ଦେଲେଣି ଏବଂ ସଭ୍ୟ ସମାଜର ମୁଣ୍ଡ ବ୍ୟଥାର କାରଣ ହେଲେଣି । ବର୍ତ୍ତମାନର ଯୁବଗୋଷ୍ଠୀ **"Old is Gold"** ନ କହି **"Old is bold"** କହି ସେମାନଙ୍କର ଅଭିଜ୍ଞତାକୁ ବେଖାତିର କରି ବୟସ୍କ ତଥା ଅଭିଜ୍ଞମାନଙ୍କୁ ଅବସର ନେବାକୁ ମଧ୍ୟ ପରାମର୍ଶ ଦେବାକୁ ଆରମ୍ଭ କଲେଣି ।



# ମାଟି ନଥାଉ ଗୃହ

ବର୍ତ୍ତମାନ ସାରା ପୃଥିବୀ ଏବଂ ମାନବ ସମାଜ ଏକ ଅନିଶ୍ଚିତ ଭବିଷ୍ୟତ ଆଡ଼କୁ ଖୁବ୍ କ୍ଷିପ୍ର ଗତିରେ ଅଗେଇବାରେ ଲାଗିଛି । ପ୍ରାକୃତିକ ସମ୍ପଦ ଓ ସୁସ୍ଥ ପରିବେଶର କ୍ଷୟ ଘଟି କ୍ରମେ ପୃଥିବୀରେ ଫସଲ ଉତ୍ପାଦନ କମିବା ସଙ୍ଗେ ସଙ୍ଗେ ଜନସଂଖ୍ୟା ଦ୍ରୁତଗତିରେ ବଢ଼ିବାରେ ଲାଗିଛି । ଜନସଂଖ୍ୟାର କ୍ରମାଗତ ବୃଦ୍ଧି ଯୋଗୁ ଖାଦ୍ୟ ସମସ୍ୟା କ୍ରମେ ଜଟିଳରୁ ଜଟିଳତର ହେଲାଣି । ପୃଥିବୀର କେତେକ ଦେଶର ଧନୀଲୋକେ ପୁଷ୍ଟିସାର ଖାଦ୍ୟ ଖାଇ ବହୁ ଖାଦ୍ୟ ଅଯଥାରେ ନଷ୍ଟ କରୁଥିବା ବେଳେ ବହୁ ଗରିବ ବିକାଶଶୀଳ ଦେଶର ଜନସାଧାରଣ ଖାଦ୍ୟବିନା ରୋଗାକ୍ରାନ୍ତ ହୋଇ ପୋକମାଛି ପରି ମରିବାରେ ଲାଗିଛନ୍ତି ।

ଚଳିତ ଦଶନ୍ଧିରେ ଆଫ୍ରିକାର ଇଥୋପିଆ ଓ ସୁଦାନ ପ୍ରଭୃତି ଦେଶରେ ସଂଘଟିତ ହୋଇଥିବା ଲୋମହର୍ଷଣକାରୀ ଦୁର୍ଭିକ୍ଷ ଲୋକଙ୍କ ମନରୁ ଲିଭିନାହିଁ । ଖାଇବାକୁ ନପାଇ ଏଠାରେ ଯେପରି ଲକ୍ଷ ଲକ୍ଷ ଲୋକ ମଲେ, ତାହା ସାରା ବିଶ୍ୱର ସଭ୍ୟ ମାନବ ସମାଜ ପ୍ରତି ଏକ ଆହ୍ୱାନ ।

ଚଳିତ ବର୍ଷ ଆମ ଦେଶରେ ମୌସୁମୀବାୟୁ ଦୁର୍ବଳ ହୋଇ ଘୋର ମରୁଡ଼ି ଅବସ୍ଥା ଦେଖା ଦେଇଛି । ଆମ ଦେଶରେ ମୁଷ୍ଟିମେୟ ଧନୀଲୋକ ବିଳାସବ୍ୟସନ ମଧ୍ୟରେ ରହୁଥିଲେ ମଧ୍ୟ ଗରିବ ମାନଙ୍କ ଅବସ୍ଥା "ଯଥା ପୂର୍ବଂ ତଥା ପରଂ" ଅବସ୍ଥାରେ ରହୁଛି । ଚଳିତ ଶତାବ୍ଦୀ ଶେଷବେଳକୁ ପୃଥିବୀର ଲୋକସଂଖ୍ୟା ସାଢ଼େ ଛଅ ଶହ କୋଟି ଏବଂ ଭାରତର ଲୋକସଂଖ୍ୟା ଏକଶହ କୋଟି ହେବ ବୋଲି ବିଶେଷଜ୍ଞ ମାନେ ହିସାବ କରି କହିଲେଣି ।

ବର୍ତ୍ତମାନ ପୃଥିବୀର ଲୋକସଂଖ୍ୟା ୪୮୦ କୋଟି ହେଲାଣି । ଭାରତ ସ୍ୱାଧୀନ ହେବା ବେଳେ ଏହାର ଲୋକ ସଂଖ୍ୟା ୩୬ କୋଟି ୬୭ ଲକ୍ଷ ହୋଇଥିବା ବେଳେ ବର୍ତ୍ତମାନ ଏହା ଦୁଇଗୁଣରୁ ଅଧିକ ହୋଇ ୭୮ କୋଟି ହେଲାଣି । ପ୍ରତିବର୍ଷ ଭାରତର ଲୋକସଂଖ୍ୟା ଦେଢ଼କୋଟି ହିସାବରେ ବଢ଼ିବାରେ ଲାଗିଛି । ଏହି ହାରରେ ଯଦି ଭାରତର ଲୋକସଂଖ୍ୟା ବଢ଼ିଚାଲେ ତେବେ ପ୍ରାୟ ୪୦ ବର୍ଷ ଭିତରେ ଭାରତର ଜନସଂଖ୍ୟା ଚୀନକୁ ଟପିଯିବ ଏବଂ ଭାରତ ପୃଥିବୀର ସବୁଠାରୁ ଜନବହୁଳ ରାଷ୍ଟ୍ରରୂପେ ପରିଗଣିତ ହେବାର ସୌଭାଗ୍ୟ ଲାଭ କରିବ ବୋଲି ଗଣନା କରାଯାଇ ସାରିଲାଣି । ଏବେ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ କେତେକ ଉନ୍ନତି ହୋଇଥିବାରୁ ମଣିଷର ପରମାୟୁ ବଢ଼ିଯାଇଛି । ମାତ୍ର ଜନସଂଖ୍ୟା ବହୁ ଗୁଣରେ ବର୍ତ୍ତମାନ ବଢ଼ିଚାଲିଥିବାରୁ ପୃଥିବୀ ସମସ୍ତଙ୍କ ଅଜାଣତରେ ଏକ ବିସ୍ଫୋରଣ ଆଡ଼କୁ ଗତି କରୁଥିବା ପରି ମନେହୁଏ ।

ପୃଥିବୀ ତଥା ଆମ ଦେଶରେ ଥିବା ସ୍ଥଳଭାଗର ଅଧିକାଂଶ ଅଂଶ ନଦୀ ନାଳ, ପାହାଡ଼, ପର୍ବତ, ମରୁଭୂମି ଓ ଜଙ୍ଗଲ ତଥା ଅନୁର୍ବର ଭୂମିରେ ପୂର୍ଣ୍ଣ । ପୃଥିବୀ ପୃଷ୍ଠର ସମୁଦାୟ ସ୍ଥଳଭାଗର ମାତ୍ର ଶତକଡ଼ା ୧୧ ଭାଗ ଜମିଭୂମି ପୃଥିବୀ ପୃଷ୍ଠର ୫୦୦ କୋଟି ମଣିଷ ଓ କୋଟି କୋଟି ପଶୁପକ୍ଷୀଙ୍କୁ ଖାଦ୍ୟ ଯୋଗାଉଛି । ଏହି ଜମିର ପରିମାଣ ଭବିଷ୍ୟତରେ ଆଉ ବିଶେଷ ବଢ଼ିବାର ନାହିଁ । ପୁଣି ଫସଲ ଉତ୍ପନ୍ନ ହେଉଥିବା ଭୂଭାଗରୁ କେତେକ ଅଂଶ ମୌସୁମୀ ବାୟୁ ଉପରେ ନିର୍ଭର କରେ । ଜନସଂଖ୍ୟା କମାଇବାକୁ ପୃଥିବୀର ଚାରିଆଡ଼ୁ ଆହ୍ୱାନ ଦିଆଯାଉଥିଲେ ମଧ୍ୟ ପ୍ରାୟ ଏହାର ସୁଫଳ ମିଳୁନାହିଁ । ଅନ୍ୟପକ୍ଷରେ ଜନସଂଖ୍ୟା ବୃଦ୍ଧି ଯୋଗୁ ପରିବେଶର ଦ୍ରୁତ କ୍ଷୟ ଘଟି ଜଙ୍ଗଲ ସମ୍ପଦ ଲୋପ ପାଇବାରେ ଲାଗିଛି । ଆଫ୍ରିକାର ସାହାରା ମରୁଭୂମି ଓ ଭାରତର ଥର ମରୁଭୂମି ସମେତ ପୃଥିବୀର ବିଭିନ୍ନ ମରୁଭୂମି ମଧ୍ୟ ଦ୍ରୁତ ଗତିରେ ସେମାନଙ୍କର ଆୟତନ ବଢ଼ାଇବାରେ ଲାଗିଛନ୍ତି ।

ବର୍ତ୍ତମାନ ଦେଖାଯାଇଛି ଯେ ପୃଥିବୀର ଦୁଇ ଜନାକୀର୍ଣ୍ଣ ରାଷ୍ଟ୍ର ଚୀନ ଓ ଭାରତରେ ଆଉ ଅଧିକ ଚାଷଜମି ସୃଷ୍ଟି କରାଯାଇପାରିବ ନାହିଁ; ତେଣୁ ଆମ ଦେଶର ସୀମିତ ଜମିରୁ ଚାଷ କରି ଏକଶହ କୋଟି ଲୋକଙ୍କୁ ଭବିଷ୍ୟତରେ ଖାଦ୍ୟ ଯୋଗାଇବାର ଗୁରୁଦାୟିତ୍ୱ ଆମକୁ ବହନ କରିବାକୁ ପଡ଼ିବ । ବିଶ୍ୱର ବିକାଶଶୀଳ ଦେଶମାନଙ୍କରେ ଖାଦ୍ୟ ସମସ୍ୟା ଗୁରୁତର ହେବାରେ ଲାଗିଛି । ଏହି ସବୁ ଦେଶରେ ଶିଶୁ ମୃତ୍ୟୁହାର ଓ ଖାଦ୍ୟାଭାବଜନିତ ମୃତ୍ୟୁହାର କ୍ରମେ ବଢ଼ିବାରେ ଲାଗିଛି । ପୃଥିବୀରେ ବର୍ତ୍ତମାନ ଥିବା ସୀମିତ ଜମିରେ ଚାଷକରି ଭବିଷ୍ୟତର କ୍ରମ-ବର୍ଦ୍ଧିଷ୍ଣୁ ଜନସଂଖ୍ୟାକୁ ଖାଦ୍ୟ ଯୋଗାଇବା ସମ୍ଭବପର ନୁହେଁ ବୋଲି ବୈଜ୍ଞାନିକମାନେ ମତ ଦେଲେଣି ।

ଏହି ସମସ୍ୟାର ସମାଧାନ ପାଇଁ ଜାପାନ, ଡେନମାର୍କ ପ୍ରଭୃତି ଦେଶର ବୈଜ୍ଞାନିକମାନେ କିପରି କମ୍ ସ୍ଥାନରୁ ଅଧିକ କୃଷି ଉତ୍ପାଦନ ହେବ, ମାଟି ନଥାଇ ଫସଲ କରାଯିବ; ସେ ବିଷୟରେ ଗବେଷଣା ଚଳାଇଛନ୍ତି ଏବଂ ଏଥିରେ ସଫଳ ମଧ୍ୟ ହୋଇଛନ୍ତି । ଏହି ପ୍ରକାର ମୃତ୍ତିକା ବିହୀନ ଏକ ନୂତନ ଚାଷ ପ୍ରଣାଳୀକୁ "ବାଇଓ ଫାର୍ମିଂ" ବା ଗବେଷଣାଗାର ଚାଷ ବୋଲି କୁହାଯାଇଛି । ଏହି ପ୍ରଣାଳୀରେ ଚାଷ ଏବେ ବିଶ୍ୱରେ ଅଧିକରୁ ଅଧିକ ଆଦୃତ ହେବାରେ ଲାଗିଛି ।

ଆମ ଦେଶର ଚାଷୀ ବା ଆମେ ସାଧାରଣତଃ ମାଟିକୁ ଫସଲର ମା' ବୋଲି କହିଥାଉ । ପୃଥିବୀ ପୃଷ୍ଠରେ ଯେତେ ଗଛ ସବୁ ମାଟିରୁ ହିଁ ଜନ୍ମ ହୋଇ ବଢ଼ିଥାଆନ୍ତି । ମାତ୍ର ଏହି ପ୍ରଣାଳୀରେ ଚାଷ କଲେ ମାଟିର ଆଦୌ ଆବଶ୍ୟକତା ନାହିଁ । ପାହାଡ଼ ଉପରେ, ମରୁଭୂମିରେ, ଅନୁର୍ବର ଅଞ୍ଚଳରେ ଏହି ପ୍ରଣାଳୀରେ ଚାଷ କାର୍ଯ୍ୟ କରାଯାଇ ପାରିବ । ଏହି ପ୍ରଣାଳୀ ସାମାନ୍ୟ ବ୍ୟୟସାପେକ୍ଷ ହୋଇଥିବାରୁ ଏବେ ବିଶେଷଭାବେ ଆଦୃତ ହୋଇନାହିଁ । ମାତ୍ର ଏକବିଂଶ ଶତାବ୍ଦୀର ମାନବ କୃଷିକ୍ଷେତ୍ରର ଚାଷକାର୍ଯ୍ୟ ଛାଡ଼ି ଏହି ପ୍ରଣାଳୀକୁ ଯେ ଆଦରି ନେବ ଏଥିରେ କୌଣସି ସନ୍ଦେହ ନାହିଁ ।

ରସାୟନିକ ଲବଣ, ସୋଡ଼ିୟମ ରଶ୍ମି ବ୍ୟବହାର କରି ପରୀକ୍ଷାଗାରରେ ବା ସ୍ୱତନ୍ତ୍ରଭାବରେ ନିର୍ମିତ ଏକ କାଚଘରେ ଫସଲ ଉତ୍ପାଦନ କରି ମୃତ୍ତିକା ବିହୀନ କୃଷି ପ୍ରଣାଳୀର ଉଦ୍ଭାବକ ହେଉଛନ୍ତି ଜାପାନର କୃଷି ଗବେଷକ ମୁରାଇ କୁନିହିକୋ । ୧୯୬୨ ମସିହାରେ ସେ ଏହି ପ୍ରଣାଳୀରେ କୃଷିକାର୍ଯ୍ୟ ଆରମ୍ଭ କରି ଏଥି ଉପରେ ଗବେଷଣା ଚାଲୁ ରଖିଛନ୍ତି । ମିଃ: କୁନିହିକୋ କହନ୍ତି ଯେ ମାଟିରେ କୃଷିକାର୍ଯ୍ୟ କରିବାକୁ ହେଲେ ମାଟିରେ ହଳ କରି ସାର ପ୍ରୟୋଗ କରିବାକୁ ପଡ଼େ ଏବଂ ଘାସ, ଅନାବନା ଗଛ ଇତ୍ୟାଦି ବାଛି ଶସ୍ୟ ଉତ୍ପାଦନ କରିବାରେ ବହୁ ପରିଶ୍ରମ ଓ ଖର୍ଚ୍ଚାନ୍ତ ହେବାକୁ ହୁଏ । ଅତ୍ୟଧିକ ପରିମାଣରେ ସାର ପ୍ରୟୋଗ ଦ୍ୱାରା ମଧ୍ୟ ମାଟିର ଉର୍ବରତା କ୍ରମେ ନଷ୍ଟ ହୋଇଯାଏ । ମାତ୍ର ଏହି ପ୍ରଣାଳୀରେ କୃଷିକାର୍ଯ୍ୟ ଦ୍ୱାରା ଅଯଥା ପରିଶ୍ରମ କରିବାକୁ ପଡ଼େ ନାହିଁ ।

କିନ୍ତୁ ଏଥିପାଇଁ ବ୍ୟୟସାପେକ୍ଷ ଏକ ବଡ଼ କାଚଘର ବା ପଲିଥିନ ଘର ଦରକାର । ଘର ଭିତରେ ମୋଟା ସ୍ପଞ୍ଜ ଉପରେ ମଞ୍ଜି ରଖି ମଞ୍ଜିରୁ ଗଛ ହେବାକୁ ଛାଡ଼ି ଦିଆଯାଏ । ଗଛ ଗ୍ରହଣ କରିବା ଭଳି ଅନବରତ ଲବଣ ଓ ଖାଦ୍ୟ ଯୋଗାଣ ଅବସ୍ଥା ଚାଲୁ ରଖାଯାଏ । ଘରର ଜଳବାୟୁ, ତାପମାତ୍ରା, କମ୍ପ୍ୟୁଟର ଦ୍ୱାରା ନିୟନ୍ତ୍ରିତ ହୁଏ । ଦୂରରୁ ଏହା ଏକ କୃଷିଫାର୍ମ ପରିବର୍ତ୍ତେ ଏକ ବିଜ୍ଞାନାଗାର ବା କଳ-କାରଖାନା ପରି ଦେଖାଯାଏ । ରାତିରେ ସୂର୍ଯ୍ୟରଶ୍ମି ପରିବର୍ତ୍ତେ ସୋଡ଼ିୟମ ରଶ୍ମି ପ୍ରୟୋଗର ବ୍ୟବସ୍ଥା ମଧ୍ୟ ଏଥିରେ କରାଯାଇଥାଏ । ଏହି ପ୍ରଣାଳୀରେ କୃଷି କରାଯାଇ ଉତ୍ପନ୍ନ ହେଉଥିବା ପରିବାପତ୍ର ଓ ଶସ୍ୟ ଗଛ ବାହାରର ଝଡ଼ ତୋଫାନ ଓ ବିପଦପୂର୍ଣ୍ଣ ପାଣିପାଗଠାରୁ ସମ୍ପୂର୍ଣ୍ଣରୂପେ ମୁକ୍ତ ରହେ ।

ଜାପାନର ଟୋକିଓ ନିକଟବର୍ତ୍ତୀ ଲିଲପୋର୍ଟ-ମାର୍କେଟଠାରେ ଜାପାନର ପ୍ରଥମ ବାଇଓଫାର୍ମ ପ୍ରତିଷ୍ଠିତ ହୋଇଛି । ଜମିରେ ମଞ୍ଜି ପୋତିବାର ୩ ମାସ ପରେ ଆମେ ଯେଉଁ ଫସଲ ପାଇଥାଉ ଏହି

ପ୍ରଣାଳୀରେ ଫସଲ କଲେ ମଞ୍ଜି ପୋତିବାର ପାଞ୍ଚ ସପ୍ତାହ ପରେ ତା ଠାରୁ ଅତି ଉନ୍ନତ, ଅଧିକ ଅମଳକ୍ଷମ ଏବଂ ହୃଷ୍ଟପୁଷ୍ଟ ଫସଲ ଆମେ ପାଇପାରିବା । ବିଦ୍ୟୁତ ଶକ୍ତି ଓ ଆବଶ୍ୟକ କାଚଘର ଇତ୍ୟାଦି କରି-ଯାଉଥିବାରୁ ଏହି ପଦ୍ଧତି ସାମାନ୍ୟ ବ୍ୟୟବହୁଳ ମାତ୍ର ଉତ୍କୃଷ୍ଟ ପନିପରିବା ଓ ଫଳ ଏଥିରୁ ଉତ୍ପନ୍ନ ହେଉଥିବାରୁ କ୍ରମେ ଏହା ବିଶେଷ ଲୋକପ୍ରିୟ ହେବାରେ ଲାଗିଛି ।

ଜାପାନ, ଡେନମାର୍କ, ସୁଇଡେନ ବ୍ୟତୀତ ଯୁକ୍ତରାଷ୍ଟ୍ର ଆମେରିକା ପ୍ରଭୃତି ଦେଶରେ ଏହି ପ୍ରଣାଳୀରେ କୃଷିକାର୍ଯ୍ୟ ଆରମ୍ଭ ହେଲାଣି । ବର୍ତ୍ତମାନ ସୁଦ୍ଧା ଜାପାନରେ ନଅଶହରୁ ଅଧିକ ବାଇଓଫାର୍ମ ତିଆରି ହୋଇଛି ଏବଂ ଏହା ଲୋକପ୍ରିୟ ହେବାରେ ଲାଗିଛି । ଏବେ ସାଉଦି ଆରବ, କୋରିଆ, ମାଲେସିଆ ପ୍ରଭୃତି ଦେଶରେ ମଧ୍ୟ ଏହି ପ୍ରଣାଳୀରେ ଫସଲ ଉତ୍ପାଦନ ଆରମ୍ଭ ହୋଇଛି । ଏହି ପ୍ରଣାଳୀରେ କୃଷକର ଜାପାନର କୃଷିବିତ୍ ମିଃ ନୋଜାଓ୍ୱା ଯୋହିଗୋ ଗୋଟିଏ ଟମାଟୋ



( ମାଟି ନଥାଇ ବଳିତ ବାଇଗଣ ଗଛ )

ଗଛରୁ ଛଅ ମାସ ମଧ୍ୟରେ ୧୩ ହଜାର ୩୧୨ଟି ଉତ୍କୃଷ୍ଟ ଧରଣର ବଡ଼ ଟମାଟୋ ଉତ୍ପାଦନ କରି ଏକ ରେକର୍ଡ ସୃଷ୍ଟି କରି ପାରିଛନ୍ତି । ମିଃ ସାହବଗୋ କହନ୍ତି ଯେ ପ୍ରତ୍ୟେକ ଗଛ ତାର ସୀମାହୀନ ବୃଦ୍ଧି ପାଇଁ ନିଜେ ସକ୍ଷମ ଥାଆନ୍ତି ମାତ୍ର ପାରିପାର୍ଶ୍ୱିକ ଅବସ୍ଥା, ମୃତ୍ତିକା ଅବସ୍ଥା, ତାପମାତ୍ରା, ଆର୍ଦ୍ରତା, ସୂର୍ଯ୍ୟରଶ୍ମି ଇତ୍ୟାଦି ତାର ବୃଦ୍ଧିରେ ଅନ୍ତରାୟ ସୃଷ୍ଟି କରିଥାଏ । ଏହି ପ୍ରଣାଳୀରେ କୃଷି ଦ୍ୱାରା ଆମେ ଗଛକୁ ଏହି ସବୁ ପାରିପାର୍ଶ୍ୱିକ ଅବସ୍ଥାରୁ ମୁକ୍ତ ରଖିପାରିବା ।

ସାରା ବିଶ୍ୱରେ ଏହି ପ୍ରଣାଳୀରେ ଫସଲ ଉତ୍ପାଦନ ବର୍ତ୍ତମାନ କ୍ରମେ ଲୋକପ୍ରିୟ ହେଉଛି ଓ ଏହା ଉପରେ ଅଧିକ ଗବେଷଣା ଚାଲିଛି । ଦିନ ଆସିବ ଯେତେବେଳେ ହୁଏତ ଏକବିଂଶ ଶତାବ୍ଦୀର ବଳିଷ୍ଠ ମାନବ ଏହି ପ୍ରଣାଳୀରେ କୃଷିକାର୍ଯ୍ୟ କରି କ୍ରମବର୍ଦ୍ଧିଷ୍ଣୁ ଲୋକସଂଖ୍ୟାକୁ ଖାଦ୍ୟ ଯୋଗାଇବାରେ ସକ୍ଷମ ହେବ ।



# ମୃତ ଭୂତାଣୁର ଦାନବ ପ୍ରକୃତି

ଆମ ପୃଥିବୀ ପୃଷ୍ଠରେ ଏକକୋଷୀ କ୍ଷୁଦ୍ରାତିକ୍ଷୁଦ୍ର ତଥା ଖାଲି ଆଖିରେ ଦେଖାଯାଉ ନଥିବା ସଜୀବ ପ୍ରାଣୀ ଠାରୁ ଆରମ୍ଭ କରି ବିରାଟ-କାୟ ବହୁ କୋଷୀ ପ୍ରାଣୀ ଓ ଉଦ୍ଭିଦ ବାସ କରିଥାନ୍ତି । ଏମାନଙ୍କର ସମସ୍ତଙ୍କର ନିର୍ଦ୍ଦିଷ୍ଟ ଶରୀର ବା ଦେହ ଅଛି । ଦେହରେ ବିଭିନ୍ନ କାର୍ଯ୍ୟ କରିବା ପାଇଁ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ରହିଛି । ଆମ ମଣିଷ ଦେହରେ ଚାଲିବା ପାଇଁ ଗୋଡ଼, ଖାଇବା ଓ କାମ କରିବାକୁ ହାତ, ଦେଖିବା ପାଇଁ ଆଖି, ଶୁଣିବା ପାଇଁ କାନ ଇତ୍ୟାଦି ଅଛି । ସେହିପରି ଉଦ୍ଭିଦର ଶରୀରରେ ଖାଦ୍ୟ ପ୍ରସ୍ତୁତ କରିବା ପାଇଁ ପତ୍ର, ଖାଦ୍ୟ ସଂଗ୍ରହ ପାଇଁ ଚେର ପରି ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗମାନ ରହିଛି । ମାତ୍ର ଆମ ପୃଥିବୀ ପୃଷ୍ଠରେ ଏପରି ଏକ ଜୀବନ୍ତ ବସ୍ତୁ ଅଛି ଯାହାର କି ଶରୀର ନାହିଁ । ଏହା ଅତି କ୍ଷୁଦ୍ରକାୟ । ଦେହ ନଥିବା ଏହି ଜୀବନ୍ତ ବସ୍ତୁଟି କିଏ ?

ଏହା ଭୂତାଣୁ ବା ଭାଇରସ । ଯାହାକି ପୃଥିବୀର ସବୁଆଡ଼େ ଦେଖାଯାଇଥାଏ ଏବଂ ଶୀତ, ବର୍ଷା, ଗରମ ସବୁ ସହିପାରେ । ପୃଥିବୀ ପୃଷ୍ଠରେ ଆଜିଯାଏ ଦେଖାଯାଉଥିବା ପ୍ରତ୍ୟେକ ପ୍ରାଣୀ ଉଦ୍ଭିଦଠାରୁ ଏହା ଆକାରରେ କ୍ଷୁଦ୍ର ଏବଂ ଅତି ସାଧାସିଧା ଓ ପୁରାତନ ଜୀବନ୍ତ ପଦାର୍ଥ ଭାବେ ପରିଚିତ । ଏହା ଏତେ କ୍ଷୁଦ୍ର ହେଲେ ମଧ୍ୟ କେବଳ ସଜୀବ କୋଷକୁ ଆକ୍ରମଣ କରି ବିଭିନ୍ନ ପ୍ରକାର ମାରାତ୍ମକ ରୋଗ ସୃଷ୍ଟି କରିଥାଏ ।

## ଭାଇରସ୍‌ର ଜୀବନଚକ୍ର




ଭାଇରସ ଦ୍ୱାରା ବସନ୍ତ, ମିଳିମିଳା, ଆଫ୍ରିକାରେ ପ୍ରଳୟ ସୃଷ୍ଟି କରିଥିବା ହଳଦିଆ ଜ୍ୱର, ପୋଲିଓ, ହାଡ଼ଫୁଟି, ସାଧାରଣ ଥଣ୍ଡା, ଇନଫ୍ଲୁଏଞ୍ଜା, ଏବେ ପୃଥିବୀରେ ପ୍ରଳୟ ସୃଷ୍ଟି କରିଥିବା ଏଡ଼ସ ରୋଗ, ଏପରିକି କର୍କଟ ରୋଗ ମଧ୍ୟ ମଣିଷ ଦେହରେ ସୃଷ୍ଟି ହୋଇଥାଏ । ମଣିଷ ବ୍ୟତୀତ ଉଦ୍ଭିଦକୁ ଆକ୍ରମଣ କରି ଭାଇରସ ଟମାଟୋ, ଆଳୁ, ଧୂଆଁପତ୍ର, କଖାରୁ, ବାଦାମ ଗଛର ପତ୍ରପୋଡ଼ା ରୋଗ, କୋବି, ମୂଳା, ବିନ୍ ଗଛର

ହଳଦିଆ ରୋଗ, ଚନ୍ଦନ ଗଛର ଏକ ପ୍ରକାର ରୋଗ ଏବଂ ଅନ୍ୟ ବହୁ ଉଦ୍ଭିଦରେ ବିଭିନ୍ନ ପ୍ରକାର ମାରାତ୍ମକ ରୋଗ ସୃଷ୍ଟି କରିଥାଏ । କେତେକ ଭାଇରସ ବ୍ୟାକ୍ଟେରିଆକୁ ଆକ୍ରମଣ କରି ଏହାର କୋଷକୁ ନଷ୍ଟ କରି ଦେଇଥାନ୍ତି ।

ଆମେରିକାର ନ୍ୟାସନାଲ କର୍କଟ ରୋଗ ଗବେଷଣା କେନ୍ଦ୍ରର ଡକ୍ଟର ରବର୍ଟ ଗ୍ୟାଲୋଙ୍କ ମତ ଅନୁସାରେ ମଣିଷ ଦେହରେ ସୃଷ୍ଟି ହେଉଥିବା କେତେକ କର୍କଟ ରୋଗ ସୃଷ୍ଟି ପାଇଁ ଭାଇରସ ହିଁ ମୁଖ୍ୟତଃ ଦାୟୀ । ହାରଭାର୍ଡ ଡାନା ଫାରବର କର୍କଟରୋଗ ପ୍ରତିଷ୍ଠାନର ବିଶିଷ୍ଟ ଭାଇରସବିତ୍ ଡକ୍ଟର ଉଇଲିୟମ ହାସେଲଟିନ ମତ ପ୍ରକାଶ କରି କହିଛନ୍ତି ଯେ—**"at least 25% of human cancers are caused by viruses."** ତେଣୁ ଏହି କ୍ଷୁଦ୍ରକାୟ ଜୀବ ଯେ କେଡ଼େ ମାରାତ୍ମକ ଏହିଥିରୁ ସହଜରେ ଜଣାପଡ଼େ । ପୃଥିବୀ ସୃଷ୍ଟି ଦିନଠାରୁ ଏହାର କ୍ରମ ପରିବର୍ତ୍ତନରେ ଭାଇରସ ହିଁ ମୁଖ୍ୟ ଭୂମିକା ଗ୍ରହଣ କରି ଆସିଛି । ଅତୀତରେ ଭାଇରସ ବିଷୟରେ ପୃଥିବୀବାସୀ ଜାଣିବାପୂର୍ବରୁ ଏହାଦ୍ୱାରା ଆକ୍ରାନ୍ତ ହୋଇ ବହୁ ଲୋକ ବସନ୍ତ, ଜ୍ୱର, କର୍କଟ ରୋଗ ପ୍ରଭୃତିରେ ଦୟନୀୟ ଭାବରେ ମୃତ୍ୟୁ ବରଣ କରୁଥିଲେ ।

ବର୍ତ୍ତମାନ ପୃଥିବୀ ପୃଷ୍ଠରେ ବିଭୀଷିକା ସୃଷ୍ଟି କରିଥିବା ଏଡ଼ସ୍ ରୋଗ ହିଁ ଏଡ଼ସ ଭାଇରସ ଦ୍ୱାରା ସଂକ୍ରମିତ ହୋଇଥିବାର ଜଣାପଡ଼ିଲାଣି । ବର୍ତ୍ତମାନ ସୁଦ୍ଧା ସାରା ପୃଥିବୀର ୭୫ ହଜାର ଲୋକ ଏହି ମାରାତ୍ମକ ଏଡ଼ସ ରୋଗରେ ଆକ୍ରାନ୍ତ ହୋଇ ସେଥିରୁ କେବଳ ଆମେରିକାରେ ୨୫ ହଜାର ଲୋକ ମୃତ୍ୟୁବରଣ କଲେଣି ଓ ଅନ୍ୟମାନେ କାଳାନ୍ତକ କଷ୍ଟ ଭୋଗ କରି ମୃତ୍ୟୁ ସହିତ ସଂଗ୍ରାମ କରି ଚାଲିଛନ୍ତି । ଆମକୁ ଖାଲି ଆଖିରେ ଦେଖାଯାଉନଥିବା ଏହି ମାରାତ୍ମକ ଜୀବ ବିଷୟରେ ଅଧିକ ଜାଣିବା ଦରକାର ।

ଭାଇରସର କୋଷ ନାହିଁ; ଶରୀର ନାହିଁ । କେବଳ ଜନନ ପଦାର୍ଥ ବା ନ୍ୟୁକ୍ଲିକ ଏସିଡ୍ ଓ ପ୍ରୋଟିନର ଏକ ସରଳ ପଦାର୍ଥ । ଏହା

ଜୀବନ୍ତ କୋଷ ଦେହରେ ନଥିବା ବେଳେ ମୁକ୍ତ ଭାବରେ ବହୁଦିନ ଧରି ଅକ୍ଷମ ମୃତ ପ୍ରାୟ ରହିଥାଏ । ଏହି ସମୟରେ ଏହା କୌଣସି ମାରାତ୍ମକ କାର୍ଯ୍ୟ କରିପାରେ ନାହିଁ । ମାତ୍ର ଜୀବନ୍ତ କୋଷ ମଧ୍ୟକୁ ପ୍ରବେଶ କରିବା ମାତ୍ରେ ଏହା ଜୀବନ୍ତ ଓ ସକ୍ରିୟ ହୋଇଉଠି ତାର ବିଷକ୍ରିୟା ଆରମ୍ଭ କରିଥାଏ । ଜୀବନ୍ତ କୋଷ ମଧ୍ୟକୁ ପ୍ରବେଶ କରିବା ପରେ ନିଜେ ବଂଶ-ବୃଦ୍ଧି କରିଥାଏ । ଏହା ଅନ୍ୟ ଜୀବନ୍ତ ପଦାର୍ଥ ପରି ବଢ଼ିଥାଏ, ବଂଶ-ବୃଦ୍ଧି କରିଥାଏ ମାତ୍ର ଶ୍ୱାସକ୍ରିୟା କରେ ନାହିଁ । ଏହା ଆଶ୍ରୟ ନେଇଥିବା କୋଷର ରସ ବା ଏଞ୍ଜାଇମ ଉପରେ ତାର ସମସ୍ତ କାର୍ଯ୍ୟ କରିବା ପାଇଁ ମୁଖ୍ୟତଃ ସମ୍ପୂର୍ଣ୍ଣରୂପେ ନିର୍ଭର କରିଥାଏ ।

ବହୁ ରୋଗର ସୃଷ୍ଟିକାରୀ ପ୍ରଳୟର ଅନ୍ୟନାମ ଏହି ଭୂତାଣୁକୁ ୧୮୯୦ ଖ୍ରୀଷ୍ଟାବ୍ଦରେ ରୁଷ ଉଦ୍ଭିଦ ବିଜ୍ଞାନୀ ଇଆନଓ୍ୱାସ୍କି ପ୍ରଥମେ ଆବିଷ୍କାର କରିଥିଲେ । ଏହା ଏତେ କ୍ଷୁଦ୍ର ଯେ ସାଧାରଣ ଅଣୁବୀକ୍ଷଣ ଯନ୍ତ୍ରରେ ଏହାକୁ ଦେଖିବା ଆଦୌ ସମ୍ଭବ ନୁହେଁ, ଇଲେକ୍ଟ୍ରନ ଅଣୁ-ବୀକ୍ଷଣ ଯନ୍ତ୍ରର ଉଦ୍ଭାବନ ପରେ ଏହାକୁ ଦେଖିବା ଓ ଏହାର ଫଟୋଚିତ୍ର ନେବା ସମ୍ଭବପର ହୋଇଥିଲା । ଏହାର ଆକାର ଲମ୍ବା, ରଡ଼ ପରି, ଗୋଲକାର, ବେଙ୍ଗଫୁଲ ଆକୃତିର ହୋଇଥାଏ । ରାସାୟନିକ ପଦାର୍ଥ ପରି କେତେକ ଭାଇରସ ମଧ୍ୟ ଠାଣ ଦାନାପରି ହୋଇ ରହିଥାନ୍ତି । ଏହାର ଆକାର ଏତେ ଛୋଟ ଯେ ଆମ ଆଖିକୁ ଦିଶୁନଥିବା ଏକ କୋଷୀ ବ୍ୟାକ୍ଟେରିଆ ଠାରୁ ଏହା ୧୦ ରୁ ୧୦୦ ଗୁଣ ବା ତା ଠାରୁ ଅଧିକ ଗୁଣ ଛୋଟ । ଗୋଟିଏ ଛୋଟ ଆଲପିନ କଣ୍ଟାର ମୁନ ଯେତିକି ସ୍ଥାନରେ ରହିବ, ଭାଇରସର ଆକାର ଏହାର ୧୭ ହଜାର ଭାଗରୁ ଏକ ଭାଗ ମାତ୍ର । ଏଇଥିରୁ ଏହା କେତେ କ୍ଷୁଦ୍ର ତାହା ସହଜରେ ଅନୁମାନ କରିପାରିବା । ଏହା ଏତେ କ୍ଷୁଦ୍ର ହୋଇଥିବାରୁ ଯେକୌଣସି ଫିଲଟରର ଛେଦରେ ଛାଣିହୋଇ ଛୁଟେ ନାହିଁ ।

ମାନବ ସମାଜ ଦୂର ଅତୀତରୁ ଭାଇରସ ଅତ୍ୟାଚାରର ଶୀକାର ହୋଇ ଆସିଛି । ୩୦୦୦ ବର୍ଷ ପୂର୍ବରୁ ଇଜିପ୍ଟ ତଥା ଅନ୍ୟାନ୍ୟ

ଦେଶରେ ଦେଖାଦେଇଥିବା ବସନ୍ତ ରୋଗର ପ୍ରାଦୁର୍ଭାବ, ୧୬ ଶତାବ୍ଦୀରେ ଓ ୧୭ ଶତ ଶତାବ୍ଦୀରେ ଇରୋପ, ହଲଣ୍ଡ ପ୍ରଭୃତି ଦେଶରେ ଭାଇରସ ଦ୍ଵାରା ସୃଷ୍ଟି ହୋଇଥିବା ବିଭିନ୍ନ ମାରାତ୍ମକ ରୋଗ ଯେଉଁ ପ୍ରଳୟ ସୃଷ୍ଟି କରିଥିଲା ତାହା ମାନବ ମନରୁ କେବେ ଲୋପ ପାଇବ ନାହିଁ । ଏହା ଇତିହାସ ହୋଇ ରହିଛି ।

ଏହି କ୍ଷୁଦ୍ର ଜୀବର ସୃଷ୍ଟି ନେଇ ବହୁ ବୈଜ୍ଞାନିକ ବିଭିନ୍ନ ମତାମତ ଦେଇଛନ୍ତି । ଏହାର ଏପରି ପରିବର୍ତ୍ତିତ ଗୁଣ ଯୋଗୁ ଏହା ପ୍ରାଣୀ ବା ଉଦ୍ଭିଦ କୌଣସି ଗୋଷ୍ଠୀଭୁକ୍ତ ହୋଇନାହିଁ । କେତେକ ଏହାକୁ ଏକ ଜଡ଼ ପଦାର୍ଥ ବୋଲି ମତ ଦେଇଥାନ୍ତି । ମାତ୍ର ଯେହେତୁ




ଏହା ଆଶ୍ରୟଦାତା, ଜୀବନ୍ତ କୋଷ ମଧ୍ୟରେ ପ୍ରବେଶ କରିବା ପରେ ନିଜେ ବଂଶ ବୃଦ୍ଧି କରିଥାଏ ଏବଂ ବଢ଼ିଥାଏ, ତେଣୁ ଏହାକୁ ଏକ ଜୀବନ୍ତ ବସ୍ତୁ ବୋଲି ଅନେକ ମତ ଦିଅନ୍ତି । ମାତ୍ର ଶ୍ଵାସକ୍ରିୟା ଇତ୍ୟାଦି ଜୀବନ୍ତ ପଦାର୍ଥର ଗୁଣ ନଥିବାରୁ ଏହାକୁ ମଧ୍ୟ ମୃତ କୁହାଯାଇଥାଏ । କାରଣ ଏହା ଜୀବନ୍ତ କୋଷ ସଂସ୍ପର୍ଶରେ ଆସିବା ପୂର୍ବରୁ ମୃତ ପ୍ରାୟ ରହିଥାଏ । କେତେକ ଏକକୋଷୀ ବ୍ୟାକ୍ଟେରିଆରୁ ହିଁ ଭାଇରସର ଉତ୍ପତ୍ତି ହୋଇଛି ବୋଲି ଅନେକ ବୈଜ୍ଞାନିକ ମତ ଦିଅନ୍ତି ।

ଭାଇରସ ଜନନ ପଦାର୍ଥ ବା ନ୍ୟୁକ୍ଲିକ ଏସିଡ୍ ଓ ପ୍ରୋଟିନର ଏକ ମିଶ୍ରିତ ପଦାର୍ଥ । ନ୍ୟୁକ୍ଲିକ ଏସିଡ୍ ଏହାର ଆଭ୍ୟନ୍ତରୀଣ ମୁଖ୍ୟ ଅଂଶ ଏବଂ ଏହା ଉପରେ ପ୍ରୋଟିନର ଏକ ବା ଦୁଇ ପରସ୍ତ ଯୋଡ଼ଣୀ ଅଂଶ ରହିଥାଏ । ନ୍ୟୁକ୍ଲିକ ଏସିଡ୍ ହିଁ ମୁଖ୍ୟତଃ ସଂକ୍ରମଣ ପାଇଁ ଦାୟୀ । ପ୍ରୋଟିନ କେବଳ ଏହାକୁ ରକ୍ଷା କରିଥାଏ । ଗୋଟିଏ ଭାଇରସର ଶତକଡ଼ା ୧ରୁ ୪୦ ଭାଗଯାଏ ନ୍ୟୁକ୍ଲିକ ଏସିଡ୍ ଓ ଅବଶିଷ୍ଟ ଅଂଶ ପ୍ରୋଟିନ ଥାଏ । ନ୍ୟୁକ୍ଲିକ ଏସିଡ୍ ସାଧାରଣତଃ ଆର: ଏନ: ଏ: ବା ଡି: ଏନ: ଏ: ଶ୍ରେଣୀର ହୋଇଥାଏ । ପ୍ରାଣୀ ଓ ଉଦ୍ଭିଦର କୋଷରେ ଥିବା ଅନ୍ୟାନ୍ୟ ଅଂଶ ଭାଇରସର ନଥାଏ ।

ଭାଇରସ କୌଣସି ସଜୀବ ପଦାର୍ଥ ସମ୍ପର୍କରେ ଆସିଲେ ତା ଦେହର ଏକ ସ୍ୱତନ୍ତ୍ର ଅଙ୍ଗରେ ବା ଅଞ୍ଚଳରେ ଲାଗିରହେ । ଏହା ପରେ ଆଶ୍ରୟ ନେଇଥିବା କୋଷ ମଧ୍ୟକୁ ପଶିଯାଏ । ଉକ୍ତ କୋଷ ମଧ୍ୟକୁ ପ୍ରବେଶ କରିସାରିବା ପରେ ଭାଇରସ ତାର ପ୍ରୋଟିନ ଆବରଣକୁ ତ୍ୟାଗ କରେ ଏବଂ ନ୍ୟୁକ୍ଲିକ ଏସିଡ୍ ମୁକ୍ତ ହୋଇ ବହୁ ଖଣ୍ଡରେ ବିଭକ୍ତ ହୁଏ । ଏହି ଖଣ୍ଡ ବହୁ ଥର ବିଭାଜିତ ହୋଇ ପ୍ରୋଟିନ ଓ ନ୍ୟୁକ୍ଲିକ ଏସିଡ୍ ଖଣ୍ଡ ସୃଷ୍ଟି କରିଥାନ୍ତି ଏବଂ ପରିଶେଷରେ ନ୍ୟୁକ୍ଲିକ ଏସିଡ୍ ସହିତ ପ୍ରୋଟିନ ମିଶିଯାଇ ବହୁ ନୂତନ ଭାଇରସ ସୃଷ୍ଟି ହୋଇଥାଆନ୍ତି । ଏହାପରେ ଜୀବନ୍ତ କୋଷକୁ ଫଟାଇ ନଷ୍ଟକରି ନୂତନ ଭାଇରସ ପଦାକୁ ବାହାରି ଆସି ଅନ୍ୟ ସଦ୍ୟ କୋଷକୁ ଆକ୍ରମଣ କରିଥାନ୍ତି । ସଜୀବ ପଦାର୍ଥର କୋଷ ନଷ୍ଟ ପ୍ରକ୍ରିୟା ଏହିପରି ଖୁବ୍ ଦ୍ରୁତଗତିରେ ଭାଇରସ ଦ୍ୱାରା ଚାଲିଥାଏ ।

ଅଷ୍ଟାଦଶ ଶତାବ୍ଦୀରେ ଲଣ୍ଡନର ଗ୍ରାମାଞ୍ଚଳରେ କାମ କରୁଥିବା ଡାକ୍ତର ଏଡ୍‌ୱାର୍ଡ଼ ଜେନର ଗୋବୀଜଟୀକା ଆବିଷ୍କାର କରି ପ୍ରଥମ ଭାଇରସ ପ୍ରତିରୋଧ ଔଷଧ ଆବିଷ୍କାର କରିଥିଲେ । ସେ ପରୀକ୍ଷା କରି ଦେଖିଥିଲେ ଯେ ଗ୍ରାମାଞ୍ଚଳରେ ଗାଈଗୋରୁଙ୍କ ପାଖରେ ରହୁଥିବା ଲୋକମାନଙ୍କୁ ସାଧାରଣତଃ ବସନ୍ତ ରୋଗ ହେଉନାହିଁ । ମାତ୍ର ୧୯୦୦

ଖ୍ରୀଷ୍ଟାବ୍ଦ ବେଳକୁ ଭାଇରସ ବିଷୟରେ ସାଧାରଣ ଲୋକେ ବିଶେଷ କିଛି ଜାଣିବାକୁ ପାଇଲେ । ଗ୍ରେଟ ସାଗର ବିଷ ବେଶୀ ପରି ପୃଥିବୀ ପୃଷ୍ଠରେ ଦେଖାଯାଉଥିବା ଏହି ଅତି କ୍ଷୁଦ୍ରତମ ଜୀବନ୍ତ ପଦାର୍ଥ ଯେ କେତେ ମାରାତ୍ମକ ତାହା ଉପରୋକ୍ତ ଆଲୋଚନାରୁ କିଞ୍ଚିତ ଭାବେ ଜଣାଯାଏ । ବିଭିନ୍ନ ପ୍ରକାର ରୋଗ ଭିନ୍ନ ଭିନ୍ନ ଭାଇରସ ଦ୍ୱାରା ସୃଷ୍ଟି ହୋଇଥାଏ ।

ବୈଜ୍ଞାନିକ ଡେଭିଡ୍ ବାଲ୍‌ଟିମୋର ଭାଇରସ ଉପରେ ଗବେଷଣା କରି ନୋବେଲ ପ୍ରାଇଜ ପାଇଛନ୍ତି । ଭାଇରସ ନିଜେ ତାର ଉପସ୍ଥିତି ନ ଜଣାଇ କିପରି ଲୁଚକାଳି ଖେଳିଥାଏ ଏହା ଉପରେ ସେ ବହୁ ଗବେଷଣା କରି ଭାଇରସର ଉପସ୍ଥିତି ବିଷୟରେ ଜାଣିବାକୁ ବିଭିନ୍ନ ପ୍ରଣାଳୀ ଆବିଷ୍କାର କରିଛନ୍ତି ।

କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଡକ୍ଟର ଆର: ପାଲମର ବେମଲେ ୧୯୭୫ରୁ ୧୯୭୮ ଯାଏ ଡାଇଓ୍ୱାନ ଅଞ୍ଚଳରେ ଗବେଷଣା କରି କଭରେ କର୍କଟ ରୋଗ ସୃଷ୍ଟି କରୁଥିବା ଏକ ଶ୍ରେଣୀର ଭାଇ-ରସକୁ ଆବିଷ୍କାର କରିଥିଲେ । ଆଫ୍ରିକା ଓ ଗୁଏନା ପ୍ରଭୃତି ଦେଶରେ ଶିଶୁମାନଙ୍କୁ ହେଉଥିବା ଲିମ୍ଫୋମା ବାର ଭାଇରସ ଦ୍ୱାରା ଆକ୍ରମିତ ହେଉଥିବା ଜଣାଯାଇଛି । ଦକ୍ଷିଣ ଚୀନରେ ଗଳା, ନାସା ପ୍ରଭୃତିରେ ରୋଗ ସୃଷ୍ଟି କରି ପ୍ରାୟ ୫୦ ହଜାର ବ୍ୟକ୍ତିଙ୍କୁ ଆକ୍ରାନ୍ତ କରିଥିବା ଏକ ମାରାତ୍ମକ ରୋଗ ରେଟ୍ରୋ ଭାଇରସ ଦ୍ୱାରା ସଂକ୍ରମିତ ହୋଇଥିବାର ଜଣା-ଯାଇଛି । ଏହି ଭାଇରସ ମୂଷାଠାରୁ ଆରମ୍ଭ କରି କୁକୁଡ଼ା ପର୍ଯ୍ୟନ୍ତ ବହୁ ପ୍ରକାର ଜୀବଜନ୍ତୁଙ୍କ ଦେହରେ ବିଭିନ୍ନ ପ୍ରକାର ରୋଗ ସୃଷ୍ଟି କରିଥାଏ ।

୧୯୮୦ ମସିହାରେ ଡକ୍ଟର ରବର୍ଟ ଗ୍ୟାଲୋ ଏବଂ ତାଙ୍କର କେତେକ ସହକର୍ମୀ ତଥା ଜାପାନର କେତେକ ଗବେଷକ ମଣିଷ ଦେହରେ କର୍କଟ ରୋଗ ସୃଷ୍ଟି ପାଇଁ ଭାଇରସ ମୁଖ୍ୟତଃ ଦାୟୀ ବୋଲି ମତ ଦେଇଥିଲେ । ଦକ୍ଷିଣ ଆଫ୍ରିକା, ଜାପାନର କେତେକ ଦକ୍ଷିଣ ଦ୍ୱୀପପୁଞ୍ଜ, ଭାରତ ଓ ଅନ୍ୟାନ୍ୟ ଦେଶରେ ଦେଖାଯାଉଥିବା ରକ୍ତ କର୍କଟ ରୋଗ ସୃଷ୍ଟି ପାଇଁ ଟି-ସେଲ ଲିମ୍ଫୋଟ୍ରପିକ ଭାଇରସ ଦାୟୀ

ବୋଲି ଜଣାପଡ଼ିଲଣି । କେବଳ ଯୁକ୍ତରାଷ୍ଟ୍ର ଆମେରିକାରେ ବର୍ଷକୁ ୧୫ ହଜାରରୁ ଅଧିକ ସ୍ତ୍ରୀଲୋକ ଆକ୍ରାନ୍ତ ହେଉଥିବା Cervical କ୍ୟାନସର ରୋଗ ସୃଷ୍ଟି ପାଇଁ ପାପିଲୋମା ଭାଇରସ ଦାୟୀ ବୋଲି ମଧ୍ୟ ଜଣା-ପଡ଼ୁଛି । ଶତକଡ଼ା ୮° ଭାଗ କର୍କଟ ରୋଗ ହିଁ କେବଳ ପାପିଲୋମା ଭାଇରସ ଦ୍ୱାରା ସଂଘଟିତ ହେଉଛି ବୋଲି ଜର୍ମାନୀସ୍ଥିତ କର୍କଟ ରୋଗ ଗବେଷଣା କେନ୍ଦ୍ରର ଡକ୍ଟର ହାରାଲର୍ଡ଼ ଜୁର ହୁସେନ ପ୍ରକାଶ କରିଛନ୍ତି ।

କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଡକ୍ଟର ଜେ: ଲେଭି ଏବଂ 'ଷ୍ଟାଣ୍ଡଫୋର୍ଡ଼ ସ୍କୁଲ ଅଫ ମେଡ଼ିସିନ'ର ଡକ୍ଟର ଥୋମାସ ମେରିଗାନ ମତପ୍ରକାଶ କରିଛନ୍ତି ଯେ ଆମ ଶରୀରର ପ୍ରତିରୋଧ ଶକ୍ତି ବର୍ଦ୍ଧକ ଔଷଧ ସେବନ, ଖାଦ୍ୟାଭାବ, ମାନସିକ ଚିନ୍ତା ଓ ବିଶ୍ରାମ ନେବାରେ ବ୍ୟାଘାତ ସୃଷ୍ଟି ଯୋଗୁ ନଷ୍ଟ ହୋଇଥାଏ । ଶରୀର ଦୁର୍ବଳ ଥିବାବେଳେ ଭାଇରସ ଏହାର ସୁଯୋଗ ନେଇ ଦେହ ମଧ୍ୟକୁ ପ୍ରବେଶ କରିଥାଏ ଏବଂ ଜୀବନ୍ତ କୋଷକୁ ଆକ୍ରମଣ କରି ମାରାତ୍ମକ ରୋଗ ସୃଷ୍ଟି କରିଥାଏ । ମସ୍ତିଷ୍କରେ ଦେଖାଦେଉଥିବା ରୋଗ ପାଇଁ ମଧ୍ୟ କେତେକ ସ୍ଲୋ ଭାଇ-ରସ ଦାୟୀ ।

ଭାଇରସ ଆମର ଏତେ କ୍ଷତି କରୁଥିଲେ ମଧ୍ୟ କେତେକ ଶ୍ରେଣୀର ଭାଇରସ ମଣିଷ ତଥା ପ୍ରାଣୀ ଜଗତର ଉପକାରୀ । ପୃଥିବୀ ପୃଷ୍ଠର କ୍ରମ ପରିବର୍ତ୍ତନ ବା ଇଭୋଲ୍ୟୁସନ ସମ୍ବନ୍ଧରେ ଗୋଟିଏ ପ୍ରାଣୀ ବା ଉଦ୍ଭିଦରୁ ଅନ୍ୟ ପ୍ରାଣୀ ଉଦ୍ଭିଦର କୋଷକୁ ଜନ ପରିବର୍ତ୍ତନ କରାଇ ପ୍ରାଣୀ ଓ ଉଦ୍ଭିଦର କେତେକ ଉନ୍ନତି ଓ କ୍ରମ ପରିବର୍ତ୍ତନ ଭାଇରସ ଦ୍ୱାରା ହିଁ ସଂଘଟିତ ହୋଇଥାଏ । "ଜନ ଥେରାପି" ପଦ୍ଧତି ପାଇଁ କେତେକ ଭାଇରସଙ୍କୁ ମଧ୍ୟ ବ୍ୟବହାର କରାଯାଇଥାଏ । ଭାଇରସ ପରି ଏକ ମାରାତ୍ମକ ଜୀବ ବିଷୟରେ ବର୍ତ୍ତମାନ ଗବେଷଣା କାର୍ଯ୍ୟ ସାରା ବିଶ୍ୱରେ ଚାଲୁରହିଛି । ଭାଇରସ ନଥିବା ପୃଥିବୀ ସମ୍ଭବ ନୁହେଁ ।

●

# ନୂଆ ଜୀବନର ସୃଷ୍ଟି କଣ ସମ୍ଭବ ?

ଜୀବନ କଣ, ଏହାର ଉତ୍ପତ୍ତି କିପରି କେଉଁଠୁ ହେଲା । ଜୀବନ୍ତ ପଦାର୍ଥ ଭିତରେ କଣ ସବୁ ଅଛି, ବୈଜ୍ଞାନିକମାନେ ଗୋଟିଏ ନୂତନ ଜୀବନ ସୃଷ୍ଟି କରିପାରିବେ କି ? ଜୀବଜଗତର ଏହି ସବୁ ମୂଳ କାରଣ ସଭ୍ୟ ମାନବ ସଭ୍ୟତାକୁ ତଥା ମାନବମନରେ ଏକ ପ୍ରହେଳିକାର ପ୍ରଶ୍ନବାଚୀ ଟାଣିରଖିଛି । ଆଜିର ବହୁକୋଷୀ ଜୀବନ୍ତ ବସ୍ତୁର ସୃଷ୍ଟି କିପରି ହେଲା ଏ ବିଷୟରେ ସଠିକ ତଥ୍ୟ ପାଇବା ପାଇଁ ମଣିଷ ଆପ୍ରାଣ ଚେଷ୍ଟା କରି ମଧ୍ୟ ଏଥିରେ ସଫଳ ହୋଇ ପାରିନାହିଁ । ଆମେ ପ୍ରତ୍ୟେକ ଜୀବନ୍ତ କୋଷ ବା ଜୀବନକୁ ପ୍ରୋଟପ୍ଲାଜମ ନାମକ ଏକ ଜୀବନ୍ତ ବସ୍ତୁର ସାହଚର୍ଯ୍ୟ ଦ୍ୱାରା ଉତ୍ପତ୍ତି ହୋଇଛି ବୋଲି କହିଥାଉ । ଏହି ପ୍ରୋଟପ୍ଲାଜମ କେଉଁଥିରେ ତିଆରି ତାହା ମଧ୍ୟ ବୈଜ୍ଞାନିକମାନେ କେତେକାଂଶରେ ନିର୍ଣ୍ଣୟ କରି ସାରିଛନ୍ତି ମାତ୍ର କାହିଁ ଏବେ ସେହିସବୁ ପଦାର୍ଥର ମିଶ୍ରଣରେ କେହିଜଣେ ବୈଜ୍ଞାନିକ ଗୋଟିଏ ଜୀବନ୍ତ କୋଷ ତ ସୃଷ୍ଟି କରିବାକୁ ଆଜିଯାଏ ସକ୍ଷମ ହୋଇନାହାନ୍ତି ! ଜୀବନର ସୃଷ୍ଟି କିପରି କେଉଁଥିରୁ ହେଲା ସେହି ରହସ୍ୟ ଆଜି ଯାଏ ମଧ୍ୟ ଏକ କୁହେଳିକାର ପ୍ରଶ୍ନବାଚୀ ମଣିଷ ମନରେ ଟାଣି ରଖିଛି ।

ଜୀବନ୍ତ ବସ୍ତୁର ମୁଖ୍ୟ ଅଂଶ ପ୍ଲୋଟପ୍ଲାଜମ ୧୭୭୨ ଖ୍ରୀଷ୍ଟାବ୍ଦରେ କୋର୍ଟୀ ନାମକ ବୈଜ୍ଞାନିକଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲା । ଏହାର ୧୧ ବର୍ଷ ପରେ ଉଦ୍ଭିଦ ବିଜ୍ଞାନୀ ଭନ ମହଲ ଏହାର ନାମକରଣ ପ୍ଲୋଟପ୍ଲାଜମ କରି ଏହା ପ୍ରତ୍ୟେକ ଜୀବନ୍ତ ବସ୍ତୁର କୋଷର ମୁଖ୍ୟ ଅଂଶ ବୋଲି ମତ ପ୍ରକାଶ କରିଥିଲେ । ପ୍ରତ୍ୟେକ ଜୀବନ୍ତ ଶରୀରରେ କୋଟି କୋଟି ବିଭିନ୍ନ ପ୍ରକାରର କୋଷ ରହି ଏହାର ଶରୀରକୁ ଗଠନ କରିଛନ୍ତି । ଏହି ସବୁ କୋଷର ଆକୃତି ମଧ୍ୟ ଭିନ୍ନ ଭିନ୍ନ ପ୍ରକାରର

ହୋଇଥାଏ । କେତେକ କୋଷ ଗୋଲକାର, କେତେକ ଲମ୍ବାକୃତ, ଚେପଟା ଅବା ବର୍ତ୍ତୁଳାକାର ହୋଇଥାଏ । ପ୍ରୋଟପ୍ଲାଜମ ସାଧାରଣତଃ ରଙ୍ଗହୀନ, ଗନ୍ଧହୀନ ପାଣିଠାରୁ ଓଜନିଆ ଓ ବହଳିଆ । ଅନ୍ଧାର ଧଳା ଅଂଶ ପରି ଏହା ଦେଖାଯାଏ । କେତେକ କୋଷର ପ୍ରୋଟପ୍ଲାଜମ ପତଳା ମାତ୍ର କେତେକ ଗାଢ଼ । ଏହା ପତଳାରୁ ବହଳିଆ ଓ ବହଳିଆରୁ ପତଳାକୁ ପରିବର୍ତ୍ତିତ ହୋଇପାରେ ।

ପ୍ରତ୍ୟେକ ଜୀବନର ଏହି ମୂଳ ପଦାର୍ଥ କେଉଁ କେଉଁ ଉପାଦାନରେ ତିଆରି ତାହା ଜାଣିବା ପାଇଁ ବହୁ ବୈଜ୍ଞାନିକ ଚେଷ୍ଟା କରିଛନ୍ତି । ୧୮୧୮ ମସିହାରେ ବୈଜ୍ଞାନିକ ରିନକି ଓ ରେଡ଼ଓ୍ୱାଲଡ଼ ପ୍ରୋଟୋ-ପ୍ଲାଜମର ବିଶ୍ଳେଷଣ କରି ଏଥିରେ ଥିବା ବହଳିଆ ପଦାର୍ଥର ଓଜନର ଶତକଡ଼ା ୯୯ ଭାଗ କାର୍ବନ (ଅଙ୍ଗାର), ହାଇଡ୍ରୋଜେନ (ଉଦଯାନ), ଅକ୍‌ସିଜେନ (ଅମ୍ଳଜାନ), ନାଇଟ୍ରୋଜେନ (ଯବକ୍ଷାରଜାନ) ଥିବାର ଜାଣିବାକୁ ପାଇଥିଲେ ଓ ଅବଶିଷ୍ଟ ଏକ ଭାଗରେ ସଲଫର, ଫସଫରସ, କ୍ଲୋରିନ, ସୋଡ଼ିୟମ, ପୋଟାସିୟମ, କ୍ୟାଲସିୟମ, ମ୍ୟାଗ୍ନେସିୟମ, ଆଇରନ ପ୍ରଭୃତି ଖଣିଜ ପଦାର୍ଥ ଥିବାର ବିଶ୍ଳେଷଣ କରି ଦେଖିବାକୁ ପାଇଥିଲେ । ମାତ୍ର କୌଣସି ପ୍ରୋଟପ୍ଲାଜମ ଦେହରେ ଆୟୋଡ଼ିନ, କପର ଓ ସିଲିକନ ଥିବାର ଦେଖାଯାଇ ନଥିଲା । ଏହିସବୁ ମୌଳିକ ଓ ଯୌଗିକ ପଦାର୍ଥ ଓ ଉପାଦାନ ପ୍ରୋଟପ୍ଲାଜମ ଦେହରେ ଥିଲେ ମଧ୍ୟ ଏସବୁର ମିଶ୍ରଣରେ କପରି ଜୀବନର ସୃଷ୍ଟି ଆରମ୍ଭ ହେଲା ତାହା ଜାଣିବାକୁ ବହୁ ବୈଜ୍ଞାନିକ ଚେଷ୍ଟାକରି ମଧ୍ୟ ଆଜିଯାଏ ସଫଳ ହୋଇପାରି ନାହାଁନ୍ତି ।

ଏହିସବୁ ପଦାର୍ଥ ପ୍ରୋଟପ୍ଲାଜମ ଦେହରେ ମୁକ୍ତ ଭାବରେ ନରହି ମିଶ୍ରିତ ପଦାର୍ଥ ଭାବରେ ରହିଆନ୍ତି ଏବଂ ଏକ ବହଳିଆ ଦ୍ରବଣ ସୃଷ୍ଟି କରିଥାନ୍ତି । ଏହି ବହଳିଆ ଦ୍ରବକୁ ବିଶ୍ଳେଷଣ କଲେ ଦେଖାଯାଏ ଏଥିରେ ଜଳ, ପ୍ରୋଟିନ, କାର୍ବୋହାଇଡ୍ରେଟ, ଫ୍ୟାଟ, ଲବଣ ଇତ୍ୟାଦି ରହିଥାଏ । ଏହି ସବୁ ପଦାର୍ଥ କେତେ ପରିମାଣରେ

ରହିଥାଏ ସେ ବିଷୟରେ ଆଲୋଚନା କଲେ ଜଣାଯାଏ ଜଳ ହିଁ ପ୍ରତ୍ୟେକ କୋଷର ପ୍ରୋଟପ୍ଲାଜମର ମୁଖ୍ୟ ଅଂଶ । କୋଷର ମୋଟ ଓଜନରୁ ପ୍ରାପ୍ତ ଶତକଡ଼ା ୭୫ ଭାଗରୁ ୯୫ ଭାଗ ଅଂଶ ହିଁ ଜଳ । ଜଳରେ ରହୁଥିବା ପ୍ରାଣୀର ପ୍ରୋଟପ୍ଲାଜମରେ ଥିବା ଜଳର ପରିମାଣ ସ୍ଥଳଭାଗରେ ରହୁଥିବା ପ୍ରାଣୀର ପ୍ରୋଟପ୍ଲାଜମଠାରୁ ବେଶୀ ହୋଇଥାଏ । ଜଳ ବ୍ୟତୀତ ପ୍ରୋଟିନ ହିଁ ଜୀବନ୍ତ ବସ୍ତୁର ମୁଖ୍ୟ ଅଂଶ ରୂପେ ପ୍ରତି କୋଷର ପ୍ରୋଟପ୍ଲାଜମରେ ଥାଏ । ନାଇଟ୍ରୋଜେନ କେବଳ ପ୍ରୋଟିନରେ ଥିବାରୁ ଏହା ପ୍ରତି କୋଷର ପ୍ରୋଟପ୍ଲାଜମର ଖାଦ୍ୟ ଓ ଏହାର ନିର୍ମାଣରେ ସାହାଯ୍ୟ କରିଥାଏ । ପ୍ରୋଟପ୍ଲାଜମରେ ଥିବା ପ୍ରୋଟିନରେ ସାଧାରଣତଃ ଶତକଡ଼ା ୫୨ ଭାଗ ଅଙ୍ଗାର, ୨୩ ଭାଗ ଯବକ୍ଷାରଜାନ, ୧୬ ଭାଗ ଅମ୍ଳଜାନ, ୭ ଭାଗ ଉଦଯାନ ଓ ୩ ଦଶମିକ ୨ଭାଗ ସଲଫର ଥାଏ ।

କେତେକ କୋଷର ପ୍ରୋଟପ୍ଲାଜମର ପ୍ରୋଟିନ ଅଂଶରେ ଆୟୋଡ଼ିନ କିଛି ମାତ୍ରାରେ ଥିବାର ମଧ୍ୟ ଦେଖାଯାଇଥାଏ । ପ୍ରତ୍ୟେକ କୋଷର ପ୍ରୋଟିନର ଅଂଶ ସାଧାରଣତଃ ୧୫ ଭାଗ ହୋଇଥାଏ । ସେହିପରି ପ୍ରତି କୋଷରେ କାର୍ବୋହାଇଡ୍ରେଟ ଭାଗ ଶତକଡ଼ା ୧୫ ଦଶମିକ ୫ ଭାଗ ହୋଇଥାଏ । କାର୍ବୋହାଇଡ୍ରେଟରେ ଅଙ୍ଗାର, ଉଦଯାନ ଓ ଅମ୍ଳଜାନ ଥାଏ । ଏହା ସର୍କରା ବା ଷ୍ଟାର୍ଚ୍ଚ ଆକାରରେ ପ୍ରତ୍ୟେକ କୋଷରେ ଥାଏ । ସେହିପରି ଚର୍ବି ମଧ୍ୟ ପ୍ରତ୍ୟେକ ପ୍ରୋଟପ୍ଲାଜମରେ ଥାଏ । ଏହା ପ୍ରୋଟପ୍ଲାଜମ ଓ କୋଷକୁ ଉତ୍ତାପ ଯୋଗାଇଥାଏ । ଏହା ବ୍ୟତୀତ ଲବଣ ମଧ୍ୟ ପ୍ରୋଟପ୍ଲାଜମରେ ରହିଥାଏ । ଏହି ଲବଣ ପ୍ରୋଟିନର ରକ୍ଷଣାବେକ୍ଷଣ ପାଇଁ ଏବଂ କେତେକ ରାସାୟନିକ ପ୍ରକ୍ରିୟା ଚାଲୁ ରଖିବାରେ ପ୍ରୋଟପ୍ଲାଜମକୁ ସାହାଯ୍ୟ କରିଥାଏ । ପ୍ରୋଟପ୍ଲାଜମ ସାଧାରଣତଃ ରଙ୍ଗହୀନ ଓ ଗନ୍ଧହୀନ ।

ପ୍ରୋଟପ୍ଲାଜମ ହିଁ ଜୀବନ୍ତ କୋଷର ବଢ଼ିବା, ଶ୍ୱାସକ୍ରିୟା ସମ୍ପାଦନ କରିବା, ବଂଶବୃଦ୍ଧି କରିବା, ଖାଦ୍ୟପଦାର୍ଥ ଯୋଗାଇବା

ଇତ୍ୟାଦି ପ୍ରତ୍ୟେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିଥାଏ । ଯଦି କୌଣସି କୋଷର ପ୍ରୋଟୋପ୍ଲାଜମ ମରିଯାଏ ତେବେ ଏହିସବୁ ପ୍ରକ୍ରିୟା ବନ୍ଦ ହୋଇଯାଏ । ତେଣୁ ପ୍ରୋଟୋପ୍ଲାଜମକୁ ହିଁ ଯଥାର୍ଥରେ ଜୀବନର ମୂଳ ଉପାଦାନ ବା **"Physical basis of Life"** ବୋଲି କୁହାଯାଇଥାଏ । ବୟସ୍କ କୋଷର ପ୍ରୋଟୋପ୍ଲାଜମ ଦେହରେ କେତେକ ଜଳପୂର୍ଣ୍ଣ ଶୂନ୍ୟସ୍ଥାନ ରହିଥାଏ । ଅତ୍ୟଧିକ ଉତ୍ତାପ, ରାସାୟନିକ ପଦାର୍ଥ ପ୍ରୟୋଗ, ଏପରିକି କଣ୍ଟାଦ୍ୱାରା ଆଘାତ କଲେ ପ୍ରୋଟୋପ୍ଲାଜମ ପ୍ରତିକ୍ରିୟା ପ୍ରକାଶ କରିଥାଏ । ପ୍ରତ୍ୟେକ ଜୀବନ୍ତ କୋଷର ପ୍ରୋଟୋପ୍ଲାଜମ ସଦାସର୍ବଦା ଚଳଚଞ୍ଚଳ ରହିଥାଏ ଏବଂ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ସହଜରେ ବାରି ହୋଇ ପଡ଼େ । ଏହା କେତେକ ନିର୍ଦ୍ଦିଷ୍ଟ ପଦାର୍ଥ ବ୍ୟତୀତ କୋଷ ମଧ୍ୟକୁ ଅନ୍ୟ କୌଣସି ପଦାର୍ଥକୁ ଛାଡ଼େ ନାହିଁ ।

ଆମ ପୃଥିବୀର ଜନ୍ମ ପ୍ରାୟ ୬ଶହ କୋଟି ବର୍ଷରୁ ଅଧିକ ହେଲାଣି । ପୃଥିବୀ ପୃଷ୍ଠର ପ୍ରତ୍ୟେକ ଜୀବନର ସ୍ୱତନ୍ତ୍ରତା ରହିଛି । କେତେକ ଅଣୁ ବା କୋଷ ମିଶ୍ରିତ ହୋଇ ଏକ ସ୍ୱତନ୍ତ୍ର ଆକୃତି ସମ୍ପନ୍ନ ହୋଇ ଖାଦ୍ୟ ସଂଗ୍ରହ କରି ଶକ୍ତି ବିନିଯୋଗ କରି ପରିଶେଷରେ ବର୍ଦ୍ଧିତ ହୋଇ ବଂଶବୃଦ୍ଧି କରି ମୃତ୍ୟୁବରଣ କରିବା ହିଁ ପ୍ରତ୍ୟେକ ଜୀବନର ଚରିତ୍ର । ପୃଥିବୀ ପୃଷ୍ଠରେ ଜୀବନ୍ତ ପଦାର୍ଥ କେଉଁଠୁ ଆସିଲେ ଆମେ ଏହି ପ୍ରଶ୍ନ ଯାହାକୁ ପଚାରିବା ହୁଏତ ତାଙ୍କଠାରୁ ଉତ୍ତର ପାଇବା ପ୍ରତ୍ୟେକ ଜୀବନ୍ତ ପଦାର୍ଥ ସେମାନଙ୍କ ବାପ ମାଙ୍କ ଠାରୁ ଉତ୍ପନ୍ନ ହୋଇଛନ୍ତି । ମାତ୍ର ସେମାନଙ୍କ ବାପ ମା କେଉଁଠୁ ଆସିଲେ ଏହିପରି ସର୍ବପ୍ରଥମ ବାପ ମା କିପରି ସୃଷ୍ଟି ହେଲେ ସେ ବିଷୟରେ ଆଲୋଚନା କରିବାକୁ ଯାଇ ବୈଜ୍ଞାନିକମାନେ ବିଭିନ୍ନ ପ୍ରକାର ମତବାଦ ପୋଷଣ କରିଯାଇଛନ୍ତି ।

ପୃଥିବୀ ପୃଷ୍ଠରେ ପ୍ରଥମ ଜୀବନର ସୃଷ୍ଟି ବିଷୟରେ ଗ୍ରୀକ୍ ବୈଜ୍ଞାନିକମାନେ ମତ ଦେଇଥିଲେ ଯେ କାଦୁଅ ବା ମାଟିରୁ ପୋକ ଆପଣା ଛାଏଁ ଜନ୍ମ ହୋଇଥାଏ । ସେହିପରି ମାଛି, ମଶା ଆପଣାଛାଏଁ ପଚାସଢ଼ା ମାଂସ, ଅଳିଆଗଦାରୁ ଜନ୍ମ ହୋଇପଡ଼ୁଥାନ୍ତି । ମାତ୍ର ସେମାନେ କିପରି

ଜନ୍ମ ହୁଅନ୍ତି ? ଏମାନେ କାହିଁରୁ କ'ଣ ଜନ୍ମ ହେଉଛନ୍ତି କି ? ଏ ପ୍ରଶ୍ନର ଉତ୍ତର କିନ୍ତୁ ସେମାନଙ୍କ ନିକଟରେ ନଥିଲା ।

ସ୍ୱିଡେନ ରସାୟନବିତ୍ ସାଭାଣ୍ଟେ ଆରହେନିୟସ ମତ ଦେଇଥିଲେ ଯେ ସୌର ଜଗତରୁ ପୃଥିବୀକୁ ଆସିଥିବା ଏକ ଜୀବାଣୁଯୁକ୍ତ ବାୟୁ-ମଣ୍ଡଳରେ ବହୁ ସୂକ୍ଷ୍ମ ଜୀବାଣୁ ତଥା ଜୀବନ୍ତ ପଦାର୍ଥ ଥିଲେ ଏବଂ ସେହିଥିରୁ ପ୍ରଥମ ଏକକୋଷୀ ସରଳ ପ୍ରାଣୀ ପୃଥିବୀ ପୃଷ୍ଠରେ ଜନ୍ମ ନେଇଥିଲା । ମାତ୍ର ଏହି ମତ ବିଶେଷ ଫଳପ୍ରଦ ହୋଇପାରିନଥିଲା କାରଣ ସୌର ବାୟୁମଣ୍ଡଳ ବହୁ ଉତ୍ତାପପୂର୍ଣ୍ଣ ଏବଂ ସୌରଜଗତରେ ପ୍ରାୟ କୌଣସି ଗ୍ରହ, ଉପଗ୍ରହରେ ପୃଥିବୀଭଳି ବାୟୁମଣ୍ଡଳ ନାହିଁ । ଅତ୍ୟଧିକ ଉତ୍ତାପ ସହିପାରୁଥିବା ସୌରମଣ୍ଡଳରେ ଥିବା କୌଣସି ଜୀବନ ସାଧାରଣତଃ ଦୃଷ୍ଟିଗୋଚର ହୁଏ ନାହିଁ ।

ଫରାସୀ ବୈଜ୍ଞାନିକ ଲୁଇସ୍ ପାଶ୍ଚର ମତ ଦେଇଥିଲେ ଯେ ପୂର୍ବକାଳରୁ ପୃଥିବୀ ପୃଷ୍ଠରେ ଥିବା ବହୁ ପୁରାତନ ଜୀବନ୍ତ ପଦାର୍ଥରୁ ଜୀବନ ସୃଷ୍ଟି ହୋଇଛି । ଏହା ବ୍ୟତୀତ ସପ୍ତଦଶ ଶତାବ୍ଦୀରେ କେତେକ ବୈଜ୍ଞାନିକ ମତ ଦେଇଥିଲେ ଯେ କ୍ରମାଗତ ମୃତ ବସ୍ତୁର ବିଭାଜନ ଓ ଉତ୍ପାଦନରୁ ଜୀବନ ସୃଷ୍ଟି ହୋଇଥିଲା । କେତେକ ଜୀବନ ଏକ ବୃହତ୍ ଶକ୍ତିଦ୍ୱାରା ସୃଷ୍ଟି ହୋଇଥିଲା ବୋଲି ମତ ଦେଇଥିଲେ । କେତେକ ହଠାତ୍ ପ୍ରୋଟୋପ୍ଲାଜମ ଅନ୍ୟ କେଉଁଆଡ଼ୁ ଆସି ପୃଥିବୀରେ ଦେଖା-ଦେଇଥିଲା ବୋଲି ମତ ଦେଇଥିଲେ ମାତ୍ର ଏହା ସପକ୍ଷରେ କୌଣସି ପରୀକ୍ଷାମୂଳକ ତଥ୍ୟ ସାଧାରଣତଃ ମିଳିନଥିଲା । କେତେକ ବୈଜ୍ଞାନିକ ମତ ଦେଇଥିଲେ ଯେ ପୃଥିବୀ ପୃଷ୍ଠ କ୍ରମେ ଶୀତଳ ହୋଇ ଉତ୍ତାପ ଓ ଜଳକଣା ସୃଷ୍ଟି ହୋଇ ଜୀବନ ବଞ୍ଚିବା ଅବସ୍ଥା ସୃଷ୍ଟି ହେବାପରେ ଜୀବନ ନିର୍ଜୀବ ଉପାଦାନରୁ ସୃଷ୍ଟି ହୋଇଛି ।

ଅନ୍ୟ କେତେକ ବୈଜ୍ଞାନିକ ମତ ଦିଅନ୍ତି ଯେ ଜନ୍ମବେଳେ ପୃଥିବୀପୃଷ୍ଠ ବର୍ତ୍ତମାନ ଅବସ୍ଥାଠାରୁ ଢେର ଅଲଗା ଥିଲା । ସେତେବେଳେ

ଘନଘନ ବିସ୍ଫୋରଣ ଲାଗି ରହିଥିଲା । ସେତେବେଳର ପୃଥିବୀର ବାୟୁମଣ୍ଡଳ ଉଦଯାନ, ଅମ୍ଳଜାନ, ଯବକ୍ଷାରଜାନ ଓ ଅଙ୍ଗାରବାଷ୍ପ ପୂର୍ଣ୍ଣ ଥିଲା । ଏଥିମଧ୍ୟରୁ ଉଦଯାନ ସବୁଠାରୁ ଖୁବ୍ ପ୍ରତିକ୍ରିୟାଶାଳୀ ଥିଲା ଏବଂ ଏହା ଅନ୍ୟ ଗ୍ୟାସ ସହିତ ମିଶି ଉଦଯାନ କମ୍ପାଉଣ୍ଡ ତିଆରି କରିଥିଲା । ସେଥିମଧ୍ୟରୁ ଜଳ, ଆମୋନିଆ, ମିଥେନ ପ୍ରଭୃତି ଅନ୍ୟତମ । ଉଦଯାନ, ଅମ୍ଳଜାନ ସହିତ ମିଶି ଜଳ ସୃଷ୍ଟି କରିଥିଲା, ଯବକ୍ଷାରଜାନ ସହିତ ମିଶି ଆମୋନିଆ ଓ ଅଙ୍ଗାର ସହିତ ମିଶି ମିଥେନ ଗ୍ୟାସ ସୃଷ୍ଟି କରିଥିଲା । ସେତେବେଳେ ପୃଥିବୀ ପୃଷ୍ଠ ଉତ୍ତପ୍ତ ଥିବାରୁ ଜଳ ଜଳୀୟ ବାଷ୍ପ ଅବସ୍ଥାରେ ହିଁ ରହିଥିଲା । ସେତେବେଳେ ଜଳୀୟ ବାଷ୍ପରୁ ବର୍ଷା ହୋଇ ଅଗଣିତ ସାଗରର ସୃଷ୍ଟି ହୋଇଥିଲା ।

'୧୯୨୪ ମସିହାରେ ରୁଷ ରସାୟନବିତ୍ ଏ: ଆଇ: ଓପାରିନ ମତ ଦେଇଥିଲେ ଯେ ପୁରାତନ କାଳରେ ବାୟୁମଣ୍ଡଳରେ ଜୀବନରକ୍ଷାକାରୀ ଓଜନ ଗ୍ୟାସ ନଥିବାରୁ ସୂର୍ଯ୍ୟରୁ ଆସୁଥିବା ଅତି ମାରାତ୍ମକ ଶକ୍ତିଶାଳୀ ଅଲଟ୍ରାଭାଓଲେଟ ରଶ୍ମି ସିଧାସଳଖ ପୃଥିବୀ ଉପରେ ପଡୁଥିଲା । ଏହା ପୃଥିବୀ ପୃଷ୍ଠରେ ପଡ଼ି ବିଭିନ୍ନ ଗ୍ୟାସରୁ ଅଙ୍ଗାର କମ୍ପାଉଣ୍ଡମାନ ସୃଷ୍ଟି କରିଥିଲା ଏବଂ ସୁଗାର ବା ଗ୍ଲୁକୋଜ, ଗ୍ଲିସେରିନ ଫ୍ୟାଟି ଏସିଡ଼, ଆମିନୋ ଏସିଡ଼, ପ୍ୟୁରିନ ପ୍ରଭୃତି ଜୀବନ୍ତ ବସ୍ତୁର ବା କୋଷର ମୁଖ୍ୟ ଅଂଶମାନଙ୍କର ସେତେବେଳେ ବିଭିନ୍ନ ପ୍ରକାର ରସାୟନିକ ପଦାର୍ଥମାନ ସୃଷ୍ଟି ହୋଇ ଜୀବନ୍ତ କୋଷ ବା ପ୍ରୋଟପ୍ଲାଜମକୁ ସୃଷ୍ଟି କରିବାରେ ସହାୟତା କରିଥିଲା । ମାତ୍ର ପ୍ରଥମେ ଏହିସବୁ ପଦାର୍ଥରୁ ଜୀବନର ସୃଷ୍ଟି କିପରି ହେଲା ?

ଏହାର ବହୁ ଦିନ ପରେ ଆମେରିକାର ଚିକାଗୋ ବିଶ୍ୱବିଦ୍ୟାଳୟର ଜଣେ ରସାୟନବିତ୍ ଷ୍ଟାନଲି ମିଲର ଜୀବନର ସୃଷ୍ଟି ଜାଣିବା ପାଇଁ ପୃଥିବୀର ସୃଷ୍ଟି ବେଳର ଅବସ୍ଥା ପରି ଏକ କୃତ୍ରିମ ଅବସ୍ଥା ସୃଷ୍ଟି କରି ସେଠାରେ ପରୀକ୍ଷା ଚଳାଇଥିଲେ । ଶ୍ରୀ ମିଲର ପୁରାତନ ପୃଥିବୀର ବାୟୁମଣ୍ଡଳରେ ଥିବା ବିଭିନ୍ନ ଗ୍ୟାସ ଯଥା ଜଳ,

ମିଥେନ, ଆମୋନିଆ, ହାଇଡ୍ରୋଜେନ ପ୍ରଭୃତି ଗ୍ୟାସ ନେଇ ଏକ କାଚ ଫ୍ଲାସ ମଧ୍ୟରେ ପୂରାଇଥିଲେ ଏବଂ ଏହା ମଧ୍ୟକୁ ସୂର୍ଯ୍ୟର ପ୍ରଚଣ୍ଡ ରଶ୍ମି-ପରି ଖୁବ୍ ଶକ୍ତିଶାଳୀ ଇଲେକ୍ଟ୍ରିକ ରଶ୍ମି ପ୍ରବେଶ କରାଇଥିଲେ । ପ୍ରାୟ ଏକ ସପ୍ତାହ ପରେ ଦେଖାଯାଇଥିଲା ଯେ ଜଳୀୟବାଷ୍ପ ଘନୀଭୂତ ହୋଇ-ଯାଇଥିଲା ଏବଂ ବହୁ ଅଙ୍ଗାର କମ୍ପାଉଣ୍ଡ ଯଥା ସୁଗାର, ଆମିନୋ ଏସିଡ୍, ଫ୍ୟାଟି ଏସିଡ୍ ଏବଂ ଅନ୍ୟାନ୍ୟ ଜୈବ ପଦାର୍ଥ ସୃଷ୍ଟି ହୋଇ ଥିଲା । ସେ ମତ ଦେଇଥିଲେ ଯେ ଏହି ଜୈବ ପଦାର୍ଥରୁ ହିଁ ପରବର୍ତ୍ତୀ କାଳରେ ଜୀବନ ସୃଷ୍ଟି ହୋଇଛି ମାତ୍ର ସେଥିରୁ କିପରି ଜୀବନ ସୃଷ୍ଟି ହେଲା ଏବଂ କେବେ ହେଲା ସେ ବିଷୟରେ କିଛି ମତାମତ ଦେଇ ସେ ନଥିଲେ ।

ଏହାପରେ ବହୁ ବୈଜ୍ଞାନିକ ଏହି ପ୍ରଣାଳୀରେ ପରୀକ୍ଷା କରି ବିଦ୍ୟୁତ ଶକ୍ତି ବ୍ୟତୀତ ଶକ୍ତିଶାଳୀ ଅଲଟ୍ରାଭାଓଲେଟ ରଶ୍ମି ପ୍ରୟୋଗ କରିଥିଲେ ଏବଂ ପ୍ରୋଟିନର ନିକଟବର୍ତ୍ତୀ ୟୁରିଆ, ସୁଗାର ପ୍ରଭୃତି ବହୁ ପଦାର୍ଥ ଏହାଦ୍ୱାରା ସୃଷ୍ଟି ହେଉଥିବାର ଦେଖିଥିଲେ ।

ଆଜିଯାଏ ଜୀବନର ସୃଷ୍ଟି ବିଷୟରେ ବିଶ୍ୱର ବହୁ ବୈଜ୍ଞାନିକ ଗବେଷଣା ରତ । ମାତ୍ର କିପରି ଅବସ୍ଥାରେ ସୀମିତ ଚାପ, ତାପ ମଧ୍ୟରେ ସବୁ ପଦାର୍ଥର ମିଶ୍ରଣରୁ ପ୍ରଥମ ଜୀବନ ଧରାପୃଷ୍ଠକୁ ଆସିଲା ସେ ବିଷୟରେ ସଠିକ ତଥ୍ୟ ପ୍ରଦାନ କରିବାକୁ କେହି ସକ୍ଷମ ହୋଇନାହାନ୍ତି । ହୁଏତ ଦିନ ଆସିବ ଯେତେବେଳେ ଉତ୍ତାପ, ଚାପ, ତାପ ଅବସ୍ଥା ଯଦି ମଣିଷ ଜାଣିବାକୁ ସକ୍ଷମ ହୁଏ ତେବେ ସେ ହୁଏତ ଗବେଷଣାଗାରରେ ଜୀବନର ମୂଳବସ୍ତୁ ପ୍ରୋଟୋପ୍ଲାଜମକୁ ସୃଷ୍ଟି କରି ଏକ ନୂତନ ଜୀବନ୍ତ ବସ୍ତୁ ତିଆରି କରିପାରିବ । ମାତ୍ର ଏହା କଣ ସମ୍ଭବ ? ଏହି ପ୍ରଶ୍ନ ଆଜିର ଧରାପୃଷ୍ଠର ସାଧାରଣ ମାନବ ବିଜ୍ଞାନ-ଗବେଷକମାନଙ୍କୁ ପଚାରି ସେମାନଙ୍କଠାରୁ ଉତ୍ତର ଅପେକ୍ଷାରେ ରହିଛି ।

●

# ହିମମଣ୍ଡଳର ଆକର୍ଷଣ

ଦୃଷ୍ଟି ଶକ୍ତି ପାଉଥିବା ଦୂର ଦିଗ୍‌ବଳୟ, ଯୁଆଡ଼େ ଚାହିଁ ଖାଲି ଧଳା ବରଫର ଆବରଣ । ଶୂନ୍ୟ ଡିଗ୍ରୀଠାରୁ ସବୁବେଳେ ଉତ୍ତାପ କମ । ଭୀଷଣ ଶୀତ । ମଣିଷ ରହିବା ପାଇଁ ଅନୁପଯୁକ୍ତ । ତା ମଧ୍ୟରେ ପୁଣି ଅଧିକାଂଶ ସମୟରେ ପ୍ରବଳ ବରଫ ଝଡ଼ । ଝଡ଼ର ବେଗ ଏତେ ପ୍ରବଳ ଯେ ପବନର ବେଗ ଘଣ୍ଟାକୁ ଅଢ଼େଇ ଶହରୁ ତିନିଶହ କିଲୋମିଟର ଯାଏ । ହିମ ପାହାଡ଼ର ଏହି ମହାଦେଶ ହିଁ ଆଣ୍ଟାର୍କଟିକା— ସତେ ଯେପରି ହିମ ଖଣ୍ଡର ଏକ ବିରାଟ ସାଗର । ମାତ୍ର ଏହାର ପାଗ ଏତେ ଖରାପ ଓ ମଣିଷ ବାସ ପାଇଁ ଅନୁପଯୁକ୍ତ ହେଲେ ମଧ୍ୟ, ଏଠାକୁ ଯିବାର ରାସ୍ତା ବିପଦସଙ୍କୁଳ ହୋଇଥିଲେ ହେଁ ମଣିଷ ଏହି ମହାଦେଶକୁ ଜୟ କରିବାର ଦୁର୍ବାର ବାସନା ନେଇ ବହୁବାର ଏହି ମହାଦେଶରେ ପଦାର୍ପଣ କରିଛି ଏବଂ ପ୍ରାୟ ୨୦୦୦ ମିଟର ମୋଟା ବରଫ ଖଣ୍ଡ ତଳେ ଏହାର ମାଟିରେ ଖଣିଜ ପଦାର୍ଥର ସନ୍ଧାନ ନେବାକୁ ବ୍ୟଗ୍ର ହୋଇଛି । ଏବେ ସୁଦ୍ଧା ଏହି ତୁଷାରାଚ୍ଛନ୍ନ ମହାଦେଶ ସମ୍ପର୍କରେ ଅଧିକା ଜାଣିବାକୁ ଏଠାରେ ବହୁ ଗବେଷଣା କେନ୍ଦ୍ର ପ୍ରତିଷ୍ଠିତ ହୋଇସାରିଛି । ଏହି ମହାଦେଶର ତୁଷାର ଖଣ୍ଡ ଉପରେ ଆଜି ବିଭିନ୍ନ ଦେଶର ଶହ ଶହ ବୈଜ୍ଞାନିକ ପାଦ ପକାଇ ଗବେଷଣା କାର୍ଯ୍ୟ ଚାଲୁ ରଖିଛନ୍ତି । ବିରାଟ ହିମଖଣ୍ଡ, ପ୍ରତିକୂଳ ପାଗ, ମହାଦେଶର ଭୀଷଣତା ସତେ ଯେପରି ଆଜି ମଣିଷ ନିକଟରେ ମୁଣ୍ଡ ନୁଆଁଇଛି । ମାନବ ନିକଟରେ କୌଣସି କାର୍ଯ୍ୟ ଯେ ଅସମ୍ଭବ ନୁହେଁ, ତାହା ଆଜିର ବିଂଶ ଶତାବ୍ଦୀର ମାନବ ପ୍ରମାଣ କରି ଦେଇଛି । ମାତ୍ର ଆଜି ବିଜ୍ଞାନର ବହୁ ଉଦ୍ଭାବନ ଫଳରେ ସେଠାକୁ ଯିବାର ପଥ ସହଜ ହୋଇଥିଲେ ମଧ୍ୟ ପୂର୍ବେ ବହୁ ଘାତ ପ୍ରତିଘାତ ମଧ୍ୟରେ ଯେଉଁ ସାହସୀ ମଣିଷ ନିଜ ଜୀବନକୁ ପାଣିଛଡ଼ାଇ ପ୍ରଥମେ ଏହି ବିପଦସଙ୍କୁଳ ମହାଦେଶରେ ପାଦ ଦେଇଥିଲେ ଏବଂ କେତେକ

ସେଠାରେ ଚରନଦ୍ବା ବର ନେଇଥିଲେ ତାହାର କାହାଣୀ ଯେପର ଭୟଙ୍କର ସେହପର ଲୋମହର୍ଷଣକୋଗ୍ଧ ।

ବଂଶ ଶତାବ୍ଦୀର ପ୍ରଥମ ସୋପାନରେ ଏହ୍ବ ତମିତ୍କେନ, ହ୍ବମ-ପାହାଡ଼ପୂର୍ଣ୍ଣ, ଦକ୍ଷଦେଶଙ୍କୁଳ ମହାଦେଶକୁ ଆବଷ୍କାର କରବାର ବାସନା ମଣିଷ ମନରେ ଦୃଢ଼ ସୃଷ୍ଟି କରଥିଲା । ଇଂରେଜ ନୌବାହ୍ନୀରେ କାର୍ଯ୍ୟ କରୁଥିବା ୧୮ ବର୍ଷ ବୟସ ସାହସୀ ବାଲକ ଫାଲକନ ସ୍କଟ ଏହ୍ବ ମହାଦେଶକୁ ଯିବାକୁ ପ୍ରଥମେ ଆଗରର ହୋଇଥିଲେ । ସେତେବେଳେ ଏହ୍ବ ଦକ୍ଷଦେଶଙ୍କୁଳ ମହାଦେଶକୁ ଯିବାକୁ ସ୍ବତନ୍ତ୍ର ଧରଣର ବରଫକଟା ଜାହାଜ ନଥିଲା । ମାତ୍ର ନଜର ଦୃଢ଼ ସଂକଳ୍ପ ଯୋଗୁ ୧୮ ବର୍ଷ ବୟସରେ ତାଙ୍କର ସାହସ, ବରତ୍ତ୍ୱ ଓ ତ୍ୟାଗ ଦେଖି ବ୍ରିଟଶ ରୟାଲ ଜୋଗ୍ରାଫିକାଲ ସୋସାଇଟିର ସଭାପତି ସାର କ୍ଲେମେଣ୍ଟ ମାର୍କହାମ ତାଙ୍କୁ ଆଣ୍ଟାର୍କଟିକା ଅଭିଯାତ୍ରୀ ଦଳର ନେତା ରୂପେ ମନୋମାତ କରଥିଲେ । ଏହ୍ବ ଯାତ୍ରା ଦନକୁ ସ୍କଟ ଅତ୍ତ ଆଗ୍ରହର ସହ୍ତ ଅପେକ୍ଷା କରଥିଲେ । ଯେତେବେଳେ ସେ କମାଣ୍ଡର ପାହ୍ୟାକୁ ଉତ୍ତୀର୍ଣ୍ଣ ହେଲେ, ସେତେବେଳେ ସେହ୍ବ ସୁଦନ ଆସିଲା ।

୧୯୦୧ ଖ୍ରୀଷ୍ଟାବ୍ଦର ଏକ ସୁନେଲି ସକାଳୁ କମାଣ୍ଡର ସ୍କଟଙ୍କ ନେତୃତ୍ବରେ ପ୍ରଥମ ବ୍ରିଟିଶ ଆଣ୍ଟାର୍କଟିକା ଅଭିଯାତ୍ରୀ ଦଳ "ଡସ୍କଭରି" ନାମକ ଏକ ଜାହାଜରେ ଦକ୍ଷଦେଶଙ୍କୁଳ ଆଣ୍ଟାର୍କଟିକା ମହାଦେଶ ଅଭିମୁଖେ ଜନ୍ମଭୂମି ଇଂଲଣ୍ଡ ଛାଡ଼ିଲେ । ଏହ୍ବ ଜାହାଜ କାଠଦ୍ୱାରା ସ୍ବତନ୍ତ୍ର ଭାବରେ ତିଆରି ହୋଇଥିଲା । ୧୯୦୨ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସ ବେଳକୁ ସେମାନେ ନ୍ୟୁଜିଲାଣ୍ଡଠାରୁ ୨୦୦୦ମାଇଲ ଦୂର ଆଣ୍ଟାର୍କଟିକା ନକଟବର୍ତ୍ତୀ ରସ ସାଗରରେ ପହଞ୍ଚିଥିଲେ । ସେତେବେଳେ ଅଭିଯାତ୍ରୀଙ୍କ ମଧ୍ୟରେ ମାତ୍ର ଜଣଙ୍କ ବ୍ୟକ୍ତିତ ସମସ୍ତେ ପ୍ରାୟ ଅନଭିଜ୍ଞ ଥିଲେ । ବହୁ କଷ୍ଟ ସ୍ବୀକାର କର ସେ ଆଣ୍ଟାର୍କଟିକାରେ ଓହ୍ଲାଇ ବଭିନ୍ନ ଅଞ୍ଚଳ ଗସ୍ତ କରଥିଲେ । ୧୯୦୩ ମସିହାରେ ସ୍କଟ ଓ ତାଙ୍କ ଦଳର ଲୋକେ ପ୍ରାୟ ୯୦୦୦ ଫୁଟ ଦକ୍ଷିଣ ପୂର୍ବ ଦଗକୁ ତୁଷାର ସ୍ରୋତରେ ୫୯ ଦନରେ

୭୨୫ ମାଇଲ ବରଫ ମଧ୍ୟରେ ଅତିକ୍ରମ କରି ଅପୂର୍ବ ଗୌରବ ପ୍ରଦର୍ଶନ କରିପାରିଥିଲେ । ଏମାନେ ସେ ନିଜ ଦେଶକୁ ଫେରି ଆସିଥିଲେ । ତାଙ୍କ ଦେଶରେ ସ୍କଟଙ୍କୁ ବହୁ ସମ୍ମାନ ଦିଆଯାଇଥିଲା ଏବଂ ତାଙ୍କୁ କ୍ୟାପ୍‌ଟେନ୍ ପାହ୍ୟାକୁ ପଦୋନ୍ନତି ଦିଆଯାଇଥିଲା ।

ମାତ୍ର ଦକ୍ଷିଣ ମେରୁକୁ ଜୟ କରିବାର ପ୍ରବଳ ଲାଳସା ସ୍କଟଙ୍କ ମନରେ ରହିଥିଲା । ସେ ଆଉଥରେ ଆଣ୍ଟାର୍କଟିକା ଅଭିଯାନରେ ଯିବା-ପାଇଁ ପ୍ରସ୍ତୁତ ହେଉଥିଲେ । ୧୯୧୧ ମସିହାରେ "ଟେରାନୋଭା" ନାମକ ଜାହାଜରେ ସେ ଆଣ୍ଟାର୍କଟିକା ଅଭିମୁଖେ ନିଜ ଦେଶରୁ ବାହାରିଥିଲେ । 'ଟେରାନୋଭା' କିଛିଦିନ ମଧ୍ୟରେ ଯାଇ ରସ ଦ୍ୱୀପରେ ପହଞ୍ଚିଥିଲା । ତାଙ୍କ ଦଳର ଅଭିଯାତ୍ରୀଙ୍କ ନିକଟରେ ମୋଟର ସ୍ଲେଜଗାଡ଼ି ଓ କୁକୁର-ଟଣା ସ୍ଲେଜ ଗାଡ଼ି ଓ ଅନ୍ୟାନ୍ୟ ଉପକରଣ ଥିଲା । ମାତ୍ର ଅଳ୍ପ କିଛିଦିନ ପରେ ମଟର ଚାଳିତ ସ୍ଲେଜ ଗାଡ଼ି ଅକାମୀ ହୋଇ ପଡ଼ିଥିଲା । ପ୍ରବଳ ତୁଷାର ଝଡ଼ ଓ ବରଫପାତ ଯୋଗୁ ୧୯୧୨ ମସିହା ଜାନୁଆରୀ ମାସ ୪ ତାରିଖରେ ଲେଫ୍‌ଟେନାଣ୍ଟ ଇ: ଆର୍: ଜି: ଆର୍ ଇଭାନସଙ୍କ ନେତୃତ୍ୱରେ ସାହାଯ୍ୟକାରୀ ଦଳ ଫେରିଆସିଥିଲେ ।

ମାତ୍ର କ୍ୟାପଟେନ ସ୍କଟ ତାଙ୍କର ଚୂଡ଼ାନ୍ତ ଦକ୍ଷିଣମେରୁ ଯାତ୍ରା ପାଇଁ ପ୍ରତିଜ୍ଞାବଦ୍ଧ ଥିଲେ । 'ସ୍ଲେଜ ଗାଡ଼ି ଟାଣି ତାଙ୍କ ସହିତ ଥିଲେ ଲେଫ୍‌ଟେନାଣ୍ଟ ଏଚ. ଆର. ବାଓ୍ୱାରସ୍, କ୍ୟାପଟେନ ଏଲ. ଇ. ଜି. ଓଟିସ, ଏଡ଼ଗାର ଇଭାନସ୍ ଓ ସ୍କଟଙ୍କର ଅନ୍ତରଙ୍ଗ ବନ୍ଧୁ ଉଇଲସନ୍ । ସେମାନେ ଅସୀମ ସାହସର ସହିତ ତୁଷାର ଝଡ଼କୁ ମୁକାବିଲା କରି ବହୁ କଷ୍ଟରେ ଜାନୁଆରୀ ୧୭ ତାରିଖରେ ଦକ୍ଷିଣମେରୁରେ ପହଞ୍ଚି ନରଓ୍ୱେ ପତାକା ଓ ବରଫ ଉପରେ କୁକୁରଙ୍କ ପାଦ ଚିହ୍ନ ଦେଖିଥିଲେ । ନରଓ୍ୱେର ରୋନାଲ୍ଡ଼୍ ଆମୁଣ୍ଡସେନ୍ ପ୍ରାୟ ଏକମାସ ପୂର୍ବରୁ ଦକ୍ଷିଣ ମେରୁରେ ପହଁଞ୍ଚିସାରିଥିଲେ । ସେମାନଙ୍କର ଆଶା ଧୂଳିସାତ୍ ହୋଇ-ଯାଇଥିଲା । ଗଭୀର ଦୁଃଖରେ ସବୁ ବନ୍ଧୁ ମ୍ରିୟମାଣ ହୋଇପଡ଼ିଥିଲେ । ଦୁଃଖ ଓ ହତାଶ ମଧ୍ୟରେ ସେମାନେ ଫେରିବାକୁ ଆରମ୍ଭ କରିଥିଲେ ।

ମାନ ଫେରିବା ପଥ ଆହୁରି କଷ୍ଟସାଧ ହୋଇପଡ଼ିଲା । ସେତେବେଳେ ଝଡ଼ର ବେଗ କ୍ରମେ ବଢ଼ିବାରେ ଲାଗିଲା । ସେମାନେ ତାଙ୍କର ନିକଟବର୍ତ୍ତୀ ସାହାଯ୍ୟ କେନ୍ଦ୍ରଠାରୁ ପ୍ରାୟ ୨୨୫ ମାଇଲ ଓ ମୂଳକେନ୍ଦ୍ରରୁ ପ୍ରାୟ ୮୫୫ ମାଇଲ ଦୂରରେ ଥିଲେ । କ୍ରମେ ପାଣି ଅତି ଖରାପ ହେଲା । ପ୍ରକୃତି ଭୀଷଣରୁ ଭୀଷଣ ହୋଇ ସତେ ଯେପରି ଭୀମ ରୂପ ଧାରଣ କରୁଥିଲା । ଫେବୃୟାରି ୧୭ ତାରିଖରେ ଇଭାନସ ଅତି ଶୋଚନୀୟ ଭାବେ ପ୍ରାଣତ୍ୟାଗ କଲେ । କ୍ୟାପଟେନ ଓଟିସ ବନ୍ଧୁମାନଙ୍କୁ ବିଶେଷ କଷ୍ଟ ଦେବାକୁ ନଚାହିଁ ନିଜେ ବରଫ ଝଡ଼ ମଧ୍ୟରେ ଅଦୃଶ୍ୟ ହୋଇଯାଇ ମୃତ୍ୟୁବରଣ କରିଥିଲେ । ମୃତ୍ୟୁବେଳକୁ ଓଟିସଙ୍କର ହାତ ପାଦ ବରଫ ଦ୍ୱାରା ଆଘାତ ପ୍ରାପ୍ତ ହୋଇ ସେଥିରୁ ମାଂସ ବାହାରି ଯାଇଥିଲା ଏବଂ ସେ ଚାଲିବାକୁ ସମ୍ପୂର୍ଣ୍ଣ ଅକ୍ଷମ ହୋଇ-ପଡିଥିଲେ । ସେମାନଙ୍କର ଶେଷ ଆଶ୍ରୟସ୍ଥଳ ଓ୍ୱାନ୍‌ଟନ୍ କ୍ୟାମ୍ପରୁ କ୍ରମେ ଖାଦ୍ୟ ଜାଳେଣୀ ସବୁ ସରିଗଲା, ଏବଂ ତା ସହିତ ବରଫଝଡ଼ର ଆକାର ମଧ୍ୟ କ୍ରମେ ବଢ଼ି ବଢ଼ି ଚାଲିଲା । କୌଣସିମତେ ପଦାକୁ ବାହାରିବା ସମ୍ଭବ ନଥିଲା । ବରଫଝଡ଼ ତାର କାଳ ହାତ ଲମ୍ବାଇ ସତେ ଯେପରି ଦୁଇବନ୍ଧୁ ସ୍କଟ ଓ ଉଇଲସନଙ୍କୁ ତା କୋଳକୁ ଟାଣି ନେବାକୁ ଯାଉ-ଥିଲା ।

ମାର୍ଚ୍ଚ ୨୯ ତାରିଖରେ କ୍ୟାପଟେନ ସ୍କଟ ତାଙ୍କ ଡାଏରୀରେ ଶେଷ ଲେଖା ଲେଖିଥିଲେ—ଚାରିଦିନ ହେଲା ପଦାକୁ ବାହାରି ହେଉ-ନାହିଁ । ହାତ ଆଉ ଚାଲୁନାହିଁ । ଆମ୍ଭେ ବହୁତ ଦୁର୍ବଳ । ମୁଁ ଏହି ଯାତ୍ରା ପାଇଁ ଦୁଃଖିତ ନୁହେଁ । ଏହି ଯାତ୍ରା ଇଂରେଜ ଜାତି ଯେ କେତେ କଷ୍ଟ-ସହିଷ୍ଣୁ ଏବଂ ମୃତ୍ୟୁ ପର୍ଯ୍ୟନ୍ତ କପରି ଅନ୍ୟକୁ ସାହାଯ୍ୟ କରି ହସି ହସି ମରିପାରନ୍ତି ତାହା ବିଶ୍ୱବାସୀଙ୍କୁ ସୂଚାଇ ଦେବ । କ୍ରମେ ଏହି ବୀର ଇଂରେଜମାନଙ୍କୁ ଆଣ୍ଟାର୍କଟିକାର ବହଳ ବରଫ ଶେଯ ନିଜ କୋଳକୁ ଟାଣି ନେଇଥିଲା । ପ୍ରଥମ ଆଣ୍ଟାର୍କଟିକା ଯାତ୍ରାରେ ଯାଇଥିବା ଏହି ବୀର ଇଂରେଜମାନଙ୍କର ଅସୀମ ବୀରତ୍ୱ ଓ ତ୍ୟାଗ ତଥା ବନ୍ଧୁପ୍ରୀତି ସାରା ବିଶ୍ୱବାସୀଙ୍କ ସ୍ମୃତିପଟରେ ସବୁଦିନ ପାଇଁ ଲିପିବଦ୍ଧ ହୋଇ

ରହିଗଲା । ସେହିଦିନ ଠାରୁ କେତେଥର କେତେ ଦଳ ଆଣ୍ଟାର୍କଟିକା ଅଭିମୁଖେ ଗଲେଣି ; ମାତ୍ର ଯେ କୌଣସି ଅଭିଯାତ୍ରୀ ଆଣ୍ଟାର୍କଟିକା ଅଭିମୁଖେ ଯାତ୍ରା କରିବା ବେଳେ ଏହି ବୀର ପୁରୁଷମାନଙ୍କର ସ୍ମୃତି ସେମାନଙ୍କ ଆଖି ଆଗରେ ନାଚଯାଏ ।

ବିଂଶ ଶତାବ୍ଦୀର ଆରମ୍ଭ ଓ ଶେଷ ବେଳ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଏବେ ବହୁପ୍ରକାର ନୂତନ କୌଶଳ ତଥା ସ୍ୱତନ୍ତ୍ର ଭାବେ ନିର୍ମିତ ବରଫକଟା ଜାହାଜ ସାହାଯ୍ୟରେ ଆଣ୍ଟାର୍କଟିକା ଯାଉଥିବା ଅଭିଯାତ୍ରୀ ଦଳମାନେ ସୁରକ୍ଷିତ ଓ ନିରାପଦ ଭାବରେ ଆଣ୍ଟାର୍କଟିକାକୁ ଯାଇପାରୁଛନ୍ତି । ଏବେ ପୃଥିବୀର ବହୁ ଦେଶର ଲୋକେ ଆଣ୍ଟାର୍କଟିକା ଯାଇ ସେଠାରେ ଗବେଷଣା କେନ୍ଦ୍ର ସ୍ଥାପନ କରି-ସାରିଲେଣି ।

ଭୂମି ଉପରେ ପ୍ରାୟ ଦୁଇ ହଜାର ମିଟର ବହଳର ବରଫ ଜମା ହୋଇ ରହିଥିବା ଏହି ମହାଦେଶରେ ପ୍ରଚୁର ଖଣିଜ ସମ୍ପଦ ରହିଥିବାର ଆଶା ଥିବାରୁ ବହୁ ଦେଶର ବୈଜ୍ଞାନିକମାନେ ଏହି ମହାଦେଶ ବିଷୟରେ ସଠିକ ତଥ୍ୟ ଜାଣିବାକୁ ବିଶେଷ ଆଗ୍ରହ ପ୍ରକାଶ କରୁଛନ୍ତି । ଆମ ଦେଶ ଭାରତ ତରଫରୁ ୧୯୮୧ ରୁ ୧୯୮୭ ମଧ୍ୟରେ ୭ଟି ଅଭିଯାତ୍ରୀ ଦଳ ଏହି ମହାଦେଶକୁ ଗବେଷଣା ପାଇଁ ଯାଇଛନ୍ତି ଏବଂ ଏଠାରେ ଗବେଷଣା କେନ୍ଦ୍ର ସ୍ଥାପନ କରାଯାଇଛି ।

ମହାଦେଶର ଅଧିକାଂଶ ଅଞ୍ଚଳ ସାଧାରଣତଃ ସମୁଦ୍ର ପତ୍ତନଠାରୁ ୧୦ ହଜାର ଫୁଟ ଉଚ୍ଚ ଏବଂ ଚାରିଆଡ଼େ ବିରାଟ ବରଫ ଘେରା ପ୍ରାୟ ୧୨ ହଜାରରୁ ୧୫ ହଜାର ଫୁଟ ଉଚ୍ଚତା ବିଶିଷ୍ଟ ପାହାଡ଼ ପର୍ବତ ଏହି ମହାଦେଶକୁ ଘେରି ରହିଛି । ଏଠାରେ ଥିବା ବଡ଼ ବଡ଼ ପାହାଡ଼ ପର୍ବତ ଓ ଆଗ୍ନେୟଗିରି ମଧ୍ୟରେ ମାଉଣ୍ଟ ଏରେବସ, ମାଉଣ୍ଟ ଟେରର ପ୍ରମୁଖ ଅନ୍ତର୍ଭୁକ୍ତ । କେତେକ ସ୍ଥଳରେ ବରଫ ସ୍ତରର ପ୍ରସ୍ଥ ପ୍ରାୟ ୧୫ ହଜାର ଫୁଟ ହୋଇଥାଏ । ଏହି ବିରାଟ ବରଫ ଖଣ୍ଡ କ୍ରମେ

କେନ୍ଦ୍ରାଞ୍ଚଳରୁ ଚତୁପାର୍ଶ୍ୱକୁ ଧୀରେ ଧୀରେ ଗଡ଼ି ଯାଉଥିବାର ଜଣା-ଯାଇଛି । ଏହି ମହାଦେଶର ସମୁଦ୍ରକୂଳ ଅଞ୍ଚଳ ସାଧାରଣତଃ ନିମ୍ନ ଏବଂ ଚକ୍‌କଣ । କ୍ରମାଗତ ବରଫ ଖଣ୍ଡ ଗଦା ହୋଇ ରହିରହି ମହା-ଦେଶର ଚତୁପାର୍ଶ୍ୱରେ ପ୍ରାୟ ୫୦ ରୁ ୨୦୦ ଫୁଟ ଉଚ୍ଚର ଏକ ପ୍ରାଚୀର ନିର୍ମାଣ କରିଥାଏ । ଏହି ମହାଦେଶରେ ପ୍ରାକୃତଃ କୌଣସି ସ୍ଥଳଭାଗରେ ବସବାସ କରୁଥିବା ଜୀବଜନ୍ତୁ ନାହାନ୍ତି । ଅଳ୍ପ କେତେକ ଉଦ୍ଭିଦ ସାଧାରଣତଃ ଦେଖାଯାଇଥାନ୍ତି, ମାତ୍ର ନିକଟବର୍ତ୍ତୀ ସମୁଦ୍ରରେ ପୃଥିବୀର ଅନ୍ୟ ଯେ କୌଣସି ଅଞ୍ଚଳର ସାଗରଠାରୁ ବହୁ ଅଧିକ ସଂଖ୍ୟକ ସମୁଦ୍ର ପ୍ରାଣୀ ଦେଖାଯାଇଥାନ୍ତି । ଲକ୍ଷ ଲକ୍ଷ ସଂଖ୍ୟାରେ କ୍ଷୁଦ୍ର ମାଛଠାରୁ ଆରମ୍ଭ କରି ତିମି, ସିଲ ଓ ପେଙ୍ଗୁଇନ, ଗଲସ, ପେଟ୍ରିଲସ ଓ ଅନ୍ୟ କେତେ ଜାତିର ସମୁଦ୍ର ପକ୍ଷୀ ଦେଖାଯାଇଥାନ୍ତି ।

ପ୍ରାୟ ଅଧିକାଂଶ ସମୟରେ ମହାଦେଶରେ ପ୍ରବଳ ବରଫ ଝଡ଼ ହୁଏ । ଏହି ଝଡ଼ର ବେଗ ବେଳେ ବେଳେ ଘଣ୍ଟାକେ ୨୫୦ କିଲୋ-ମିଟରରୁ ୩୦୦ କିଲୋମିଟର ହୋଇଥାଏ । ଗ୍ରୀଷ୍ମ ଋତୁରେ ମଧ୍ୟ ଏଠାର ତାପମାତ୍ରା ଶୂନ୍ୟ ଡ଼ିଗ୍ରୀ ତଳେ ଥାଏ । ଫେବୃୟାରି ମାସରେ ଏହି ମହାଦେଶରେ ଶୀତ ଦିନ ଆରମ୍ଭ ହେଲେ ଦିନ ବହୁତ ଛୋଟ ହୋଇ-ଯାଏ ଏବଂ ସମୁଦ୍ର ପାଣି ବରଫ ପାଲଟି ଯାଏ । ଏହି ସମୟରେ ସାରା ମହାଦେଶ ଗୁଣ୍ଡ ଗୁଣ୍ଡ ଛୋଟ ବରଫ ଖଣ୍ଡ ଦ୍ୱାରା ଆବୃତ ହୋଇଯାଏ ଏବଂ ଅଧିକାଂଶ ସମୟରେ ବରଫ ପାତ ହୁଏ । ଏହି ବରଫ ପାତକୁ 'ପ୍ୟାକ ଆଇସ' କୁହାଯାଏ । ସମୁଦ୍ର ସ୍ରୋତ ଓ ପ୍ରବଳ ପବନ ଏହି ବରଫ ଗୁଣ୍ଡ ଦେହରେ ଏଭଳି ଚାପ ସୃଷ୍ଟି କରିଥାଏ ଯେ ଏହା ଏକତ୍ରିତ ହୋଇ ଶକ୍ତିଶାଳୀ ହୋଇଯାଏ । ଗ୍ରୀଷ୍ମ ଋତୁ ଆସିଲେ ଏହି ବିରାଟ ବରଫ ସବୁ ଛୋଟ ଛୋଟ ଖଣ୍ଡରେ ପରିଣତ ହୋଇ ସମୁଦ୍ର ସ୍ରୋତ ମଧ୍ୟରେ ଭାସି ବୁଲେ ।

ମହାଦେଶର ନିକଟବର୍ତ୍ତୀ ସମୁଦ୍ର ପ୍ରାୟ ଅଧିକାଂଶ ସମୟରେ ଅଥୟ ଥାଏ । ଭୀଷଣ ସାମୁଦ୍ରିକ ଝଡ଼, କୁହୁଡ଼ି ପ୍ରଭୃତି ସମୁଦ୍ରବକ୍ଷରେ

ବହୁ ଉଚ୍ଚ ଲହଡ଼ି ସୃଷ୍ଟି କରିଥାଏ ଏବଂ ଏଠାକୁ ଯିବାରେ ପ୍ରତିବନ୍ଧକ ସୃଷ୍ଟି କରିଥାଏ । ତେଣୁ ଆଣ୍ଟାର୍କଟିକାକୁ ଯେ କୌଣସି ସମୟରେ ଯିବା ବିପଦସଙ୍କୁଳ ହୋଇଥାଏ । ଏବେ ସ୍ୱତନ୍ତ୍ର ଧରଣର ବରଫ କଟା ଜାହାଜ ସାହାଯ୍ୟରେ ବହୁ ଦେଶର ବୈଜ୍ଞାନିକମାନେ ଏହି ମହାଦେଶରେ ପହଞ୍ଚୁଛନ୍ତି । ପୃଥିବୀ ବାସୀ କ୍ରମେ ମହାଦେଶ ବିଷୟରେ ଅଧିକ ତଥ୍ୟ ଜାଣିବାକୁ ପାଇଲେଣି । ଏହି ମହାଦେଶକୁ ଯାଉଥିବା ଅଭିଯାନୀଦଳ ସାଧାରଣତଃ ନ୍ୟୁଜିଲାଣ୍ଡ ଓ ଆଣ୍ଟାର୍କଟିକା ମଧ୍ୟବର୍ତ୍ତୀ ରସ ସାଗର ଦେଇ ମହାଦେଶରେ ପ୍ରବେଶ କରିଥାନ୍ତି । ଏହି ସାଗରଠାରୁ ଦକ୍ଷିଣମେରୁ ନିକଟତମ । ୧୮୪୧ ମସିହାରେ ଜେମସ କ୍ଲାର୍କରସ ଏହି ସାଗରକୁ ଆବିଷ୍କାର କରିଥିଲେ ।

୧୯୦୧ ଓ ୧୯୧୧ ମସିହାରେ ଇଂରେଜ ନୌଅଫିସର କ୍ୟାପଟେନ ସ୍କଟ ତଥା ନରୱେର ରୋନାଲଡ୍ ଆମୁଣ୍ଡସନ ଦକ୍ଷିଣମେରୁ ଆବିଷ୍କାର କରି ପ୍ରଥମେ ଏଠାରେ ପହଁଞ୍ଚି ପାରିଥିଲେ । ୧୯୨୯ରେ ଆମେରିକାର ରିଚାର୍ଡ ଇଭଲିନ ବାର୍ଡ, କାଟିଲ ଆମେରିକା କେନ୍ଦ୍ରରୁ ଉଡ଼ାଜାହାଜରେ ଅନ୍ୟ ୩ଜଣ ସାଥୀଙ୍କ ସହିତ ଦକ୍ଷିଣ ମେରୁକୁ ଯାଇ ଥିଲେ । ଏହାପରେ ୪ଟି ଅଭିଯାନୀ ଦଳ ବିଭିନ୍ନ ସମୟରେ ଏହି କେନ୍ଦ୍ରରୁ ବାହାରି ଦକ୍ଷିଣମେରୁରେ ପହଁଞ୍ଚି ପାରିଥିଲେ । ୧୯୨୮ରେ ସାର ହବର୍ଟ ଉଇଲକିଶନ ମଧ୍ୟ ଉଡ଼ାଜାହାଜରେ ସାରା ମହାଦେଶ ପ୍ରଦକ୍ଷିଣ କରିଥିଲେ । ଆମେରିକାର ଲିଙ୍କନ ଓଲସୱର୍ଥ 'ବେ ଅଫ୍ ହ୍ୱଇଲସ' କେନ୍ଦ୍ର ସ୍ଥାପନ କରି ସେଠାରୁ ଆଣ୍ଟାର୍କଟିକା ଅଭିମୁଖେ ଯାତ୍ରା କରିଥିଲେ ।

ଆନ୍ତର୍ଜାତିକ ଭୌଗୋଳିକ ବର୍ଷ ଅର୍ଥାତ୍ ୧୯୫୭-୫୮ ଠାରୁ ଏହି ମହାଦେଶ ବିଷୟରେ ଅଧିକ ଗବେଷଣା କାର୍ଯ୍ୟ ଆରମ୍ଭ ହୋଇଛି । ପୃଥିବୀର ବହୁ ଦେଶ ଏହି ବରଫପୂର୍ଣ୍ଣ ମହାଦେଶରେ ସେମାନଙ୍କର ଗବେଷଣା କେନ୍ଦ୍ର ସ୍ଥାପନ କରିଛନ୍ତି । ବର୍ତ୍ତମାନ ସୁଦ୍ଧା ପ୍ରାୟ ୧୫ଟିରୁ ଅଧିକ ଦେଶର ୫୦ରୁ ଊର୍ଦ୍ଧ୍ୱ ଗବେଷଣା କେନ୍ଦ୍ର ଏଠାରେ ସ୍ଥାପିତ

ହୋଇସାରିଛି । ଆମେରିକାର ସାର୍ ଭିଭିଆନ ଫୁଚସଙ୍କ ନେତୃତ୍ୱରେ ଯାଇଥିବା ଅଭିଯାତ୍ରୀଦଳ ସମ୍ପୂର୍ଣ୍ଣ ମହାଦେଶକୁ ପ୍ରଦକ୍ଷିଣ କରିସାରିଛନ୍ତି । ଆମେରିକା, ରୁଷ, ଭାରତ ପ୍ରଭୃତି ବହୁ ଦେଶର ବୈଜ୍ଞାନିକମାନେ ଏଠାରେ ପାଣିପାଗ, ମାନଚିତ୍ର ପ୍ରସ୍ତୁତି, ଖଣିଜ ସମ୍ପଦ, ଜୀବଜନ୍ତୁଙ୍କ



[ ଆଣ୍ଟାର୍କଟିକାରେ ଭାରତୀୟ ବୈଜ୍ଞାନିକ ]

ବିଷୟରେ ଗବେଷଣା କରୁଛନ୍ତି । ଆମେରିକାନମାନେ ଏହି ମହାଦେଶରେ ଥିବା ୧୬,୮୬୩ ଫୁଟ ଉଚ୍ଚତା ବିଶିଷ୍ଟ ଏକ ଶୃଙ୍ଗ ଆବିଷ୍କାର କରିଛନ୍ତି ଏବଂ ଏହା ଆଣ୍ଟାର୍କଟିକାର ସର୍ବୋଚ୍ଚ ଶୃଙ୍ଗ ବୋଲି ଜଣାଯାଇଛି ।

ବିସ୍ତୀର୍ଣ୍ଣ ବରଫ ତଳେ ପ୍ରଚୁର କୋଇଲା, ତମ୍ବା, ସୀସା ଥିବାର ଆଶା ଥିବାରୁ ଆଣ୍ଟାର୍କଟିକାର ସ୍ୱତ୍ୱାଧିକାର ନେଇ ଏକ ଆନ୍ତର୍ଜାତିକ ରାଜିନାମା ୧୯୫୯ ମସିହାରେ ସ୍ୱାକ୍ଷରିତ ହୋଇଛି । ଏହି ଚୁକ୍ତି ଅନୁସାରେ ପୃଥିବୀର ସମସ୍ତ ଦେଶ ଆଣ୍ଟାର୍କଟିକାକୁ ଏକ ଶାନ୍ତିପୂର୍ଣ୍ଣ ଅଞ୍ଚଳରୂପେ ବ୍ୟବହାର କରିପାରିବେ । ଏଠାରେ କୌଣସି ଯୁଦ୍ଧ କେନ୍ଦ୍ର ସ୍ଥାପନ କରାଯାଇ ପାରିବ ନାହିଁ ଏବଂ କୌଣସି ପ୍ରକାର ଅସ୍ତ୍ରଶସ୍ତ୍ର ପରୀକ୍ଷା ମଧ୍ୟ କରାଯିବ ନାହିଁ । ବିଭିନ୍ନ ଦେଶ ଆଣ୍ଟାର୍କଟିକା ଅଭିଯାନରୁ ପାଉଥିବା

ନୂତନ ତଥ୍ୟ ପରସ୍ପର ମଧ୍ୟରେ ଆଦାନ ପ୍ରଦାନ କରିବେ ବୋଲି ମଧ୍ୟ ଉକ୍ତ ଚୁକ୍ତିରେ ଉଲ୍ଲିଖିତ ରହିଛି ।

୧୯୮୧ ମସିହାଠାରୁ ୧୯୮୭ ମସିହା ମଧ୍ୟରେ ଭାରତ ୭ଟି ଅଭିଯାତ୍ରୀଦଳଙ୍କୁ ଆଣ୍ଟାର୍କଟିକା ପଠାଇଛି । ୩ୟ ଅଭିଯାତ୍ରୀ ଦଳ



[ଆଣ୍ଟାର୍କଟିକାରେ ଭାରତୀୟ ଗବେଷଣା କେନ୍ଦ୍ର ଦକ୍ଷିଣ ଗାଙ୍ଗୋତ୍ରୀ]

ଏଠାରେ "ଦକ୍ଷିଣ ଗାଙ୍ଗୋତ୍ରୀ" ନାମକ ଏକ ଭାରତୀୟ ଗବେଷଣା କେନ୍ଦ୍ର ସ୍ଥାପନ କରିଛନ୍ତି । ୭ମ ଆଣ୍ଟାର୍କଟିକା ଅଭିଯାତ୍ରୀ ଦଳ ମଧ୍ୟ ଭାରତର ୨ୟ ଗବେଷଣା କେନ୍ଦ୍ର "ମୈତ୍ରୀ"କୁ ସ୍ଥାପନ କରିଛନ୍ତି । ଏହା ବ୍ୟତୀତ ଏହି ଦଳରେ ଯାଇଥିବା ବୈଜ୍ଞାନିକମାନେ ସେଟେଲାଇଟ ମାଧ୍ୟମରେ ଭାରତ ସହିତ ପୂର୍ଣ୍ଣ ଯୋଗାଯୋଗ ସ୍ଥାପନ କରି ସନ୍ତୋଷଜନକ ଗବେଷଣା କାର୍ଯ୍ୟ ଚାଲୁ ରଖିଛନ୍ତି । ୭ମ ଦଳ ୧୯୮୭ ନଭେମ୍ବର ମାସରେ ଭାରତରୁ ବାହାରି ୧୯୮୭ ମାର୍ଚ୍ଚ ୨୨ ତାରିଖରେ ଦେଶକୁ ଫେରିଆସିଛନ୍ତି । ଏହି ଦଳର ମୁଖ୍ୟ ଡକ୍ଟର ଏ: ଏଚ: ପାରୁଲକର ଦଳର ବୈଜ୍ଞାନିକମାନଙ୍କ କାର୍ଯ୍ୟର ଉଚ୍ଚ ପ୍ରଶଂସା କରିଛନ୍ତି । ଏହି ଦଳରେ କର୍ଣ୍ଣେଲ ଭି: ଏସ: ଆୟାର ସମେତ ୨୪ ଜଣ ବୈଜ୍ଞାନିକଙ୍କୁ

ନେଇ ମୋଟ ୭୬ ଜଣ ଆଣ୍ଟାର୍କଟିକା ଯାଇଥିଲେ । ଏହି ଦଳ ଆଣ୍ଟାର୍କଟିକାର ବିଭିନ୍ନ ପାହାଡ଼ ପର୍ବତର ନକ୍ସା ପ୍ରସ୍ତୁତ କରିବା, ପାଣିପାଗ ବିଷୟରେ ଗବେଷଣା କରିବା ସହିତ ଏଠାରେ ଥିବା ଖଣିଜ ସମ୍ପଦ ତଥା ଜୀବଜନ୍ତୁଙ୍କ ଉପରେ ଗବେଷଣା କରିଛନ୍ତି । ପବନରୁ ଶକ୍ତି ଉତ୍ପାଦନ କରିବାକୁ ଏହି ଦଳର ବୈଜ୍ଞାନିକମାନେ ଏକ ପବନ କଳ ସ୍ଥାପନ କରି ୨୮ କିଲୋମିଟର ବେଗର ପବନରୁ ୧ ଦଶମିକ ୫ କିଲୋଓ୍ୱାଟ ଶକ୍ତି ସଂଗ୍ରହ କରିପାରିଛନ୍ତି । ଆଣ୍ଟାର୍କଟିକାଠାରେ ଭାରତୀୟ ଦଳ ଏକ ସ୍ୱତନ୍ତ୍ର ଯୋଗାଯୋଗ ଅଫିସ ଓ ଏକ ଡାକଘର ସ୍ଥାପନ କରିଛନ୍ତି ।

ଆଣ୍ଟାର୍କଟିକା ବିଷୟରେ ଭାରତରେ ଏକ ସ୍ଥାୟୀ ଶିକ୍ଷା କେନ୍ଦ୍ର ନିର୍ମାଣ କରିବାକୁ ଗୋଆ ସରକାର ଗୋଆ ସହରରେ ୧୮ ଏକର ଜମି ଦେଇଛନ୍ତି । ଏହିଠାରେ ୭ମ ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ ଏକ ସ୍ଥାୟୀ କେନ୍ଦ୍ର ପ୍ରତିଷ୍ଠିତ ହେବ । ବର୍ତ୍ତମାନ ଏହି କେନ୍ଦ୍ରର କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଛି । ଭବିଷ୍ୟତରେ ଆଣ୍ଟାର୍କଟିକା ଅଭିଯାନ ବିଷୟରେ ଅଧିକ ଗବେଷଣା ପାଇଁ ୧୯୮୮ ଜାନୁଆରୀ ମାସରେ କେନ୍ଦ୍ର ସରକାର ଏକ ସ୍ୱତନ୍ତ୍ର "ଆଣ୍ଟାର୍କଟିକା ଷ୍ଟଡ଼ି ଗ୍ରୁପ୍" ଗଠନ କରିଛନ୍ତି । ଏହି ସଂସ୍ଥାର ଚେୟାରମ୍ୟାନ ରୂପେ "କାଉନସିଲ ଅଫ ସାଇଣ୍ଟିଫିକ ଏଣ୍ଡ ଇଣ୍ଡଷ୍ଟ୍ରିଆଲ ରିସର୍ଚ୍ଚ" ବିଭାଗ ଡାଇରେକ୍ଟର ରହିବେ । ଏହି ସଂସ୍ଥା ଆଣ୍ଟାର୍କଟିକା ଯାଉଥିବା ପ୍ରତି ଅଭିଯାନ ଦଳ ମଧ୍ୟରେ ସମନ୍ୱୟ ରକ୍ଷାକରି ସେମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଉପଦେଶ ଦେବେ । ଏହି ସଂସ୍ଥାର ପ୍ରଥମ ବୈଠକ ଚଳିତ ବର୍ଷ ଜାନୁଆରୀ ୪ ତାରିଖ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ହୋଇ ଅଷ୍ଟମ ଆଣ୍ଟାର୍କଟିକାଯାତ୍ରାର ଚୂଡ଼ାନ୍ତ ପ୍ରସ୍ତୁତି ଓ ଅନ୍ୟାନ୍ୟ ବହୁ ବିଷୟରେ ଆଲୋଚନା ହୋଇଥିବାର ଜଣାଯାଇଛି ।



# ଚନ୍ଦ୍ର ଜୟର କୋଡ଼ିଏ ବର୍ଷ ପରେ

ଆଜକୁ ୨୮ ବର୍ଷ ତଳେ ଆମେରିକାର ସେତେବେଳର ରାଷ୍ଟ୍ରପତି ଜନ୍. ଏଫ. କେନେଡ଼ି ଇଚ୍ଛା ପ୍ରକାଶ କରି କହିଥିଲେ, "ମଣିଷ କଣ ଚନ୍ଦ୍ରକୁ ଯାଇପାରିବ ନାହିଁ ?" ସେତେବେଳେ ତାଙ୍କର ପରାମର୍ଶ-ଦାତାମାନେ ମତ ଦେଇଥିଲେ ଯେ ଏହା ଏକ ବ୍ୟୟବହୁଳ କଠିନ ଯାତ୍ରା । ଏଥିପାଇଁ ୪୦ ନିୟୁତ ଡଲାରରୁ ଅଧିକ ଅର୍ଥ ଆବଶ୍ୟକ । ଏହାବ୍ୟତୀତ ଏହି ଦୁଃସାହସିକ ଯାତ୍ରାର ସୁଫଳ ବିଷୟରେ କୌଣସି ସଠିକତା ନାହିଁ । ମାତ୍ର କେନେଡ଼ି ଏସବୁ ଶୁଣିବା ସତ୍ତ୍ୱେ ଚନ୍ଦ୍ରକୁ କିପରି ମଣିଷ ଯିବ ସେ ବିଷୟରେ ଆଗ୍ରହ ପ୍ରକାଶ କରିଥିଲେ ।

ତାଙ୍କର ଅଦମ୍ୟ ଉତ୍ସାହର ଫଳସ୍ୱରୂପ ଆଜକୁ ୨୦ ବର୍ଷ ତଳେ ୧୯୬୯ ମସିହା ଜୁଲାଇ ମାସ ୨୦ ତାରିଖ ଦିନ ସମଗ୍ର ମାନବ ସମାଜକୁ ବିସ୍ମୟାଭିଭୂତ କରି ଆମେରିକାର ମହାକାଶଚାରୀ ନିଲ ଆର୍ମଷ୍ଟ୍ରଙ୍ଗ ପ୍ରଥମେ ଚନ୍ଦ୍ର ପୃଷ୍ଠରେ ପାଦ ଦେଲେ । ପୃଥିବୀ ମାଟି ବ୍ୟତୀତ ଅନ୍ୟ ଏକ ବିଦେଶୀ ଉପଗ୍ରହର ପ୍ରଥମ ସ୍ପର୍ଶ ସେଦିନ ମଣିଷ ଅନୁଭବ କଲା । ଯୁଗ ଯୁଗ ଧରି ପୃଥିବୀବାସୀଙ୍କ ମନରେ ଭିନ୍ନ ଚିତ୍ରପଟ ସୃଷ୍ଟିକାରୀ ଚନ୍ଦ୍ର ସେଦିନ ମଣିଷ ନିକଟରେ ହାରି ମାନିଲା । ଦୁଇଟା ୫୬ ମିନିଟରେ ଯେତେବେଳେ ମହାକାଶଚାରୀ ଆର୍ମଷ୍ଟ୍ରଙ୍ଗଙ୍କ ପାଦ ଚନ୍ଦ୍ର ପୃଷ୍ଠ ଛୁଇଁଲା ସେତେବେଳେ ଆମେରିକାର ମହାକାଶ ଗବେଷଣା କେନ୍ଦ୍ରର କଣ୍ଟ୍ରୋଲ ରୁମ ଭିତରେ ଅପେକ୍ଷା କରିଥିବା ଏକହଜାର ବୈଜ୍ଞାନିକଙ୍କ ସମେତ କୋଟି କୋଟି ପୃଥିବୀବାସୀ ଆନନ୍ଦରେ ଅଧୀର ହୋଇପଡ଼ିଥିଲେ । ସେଦିନ ଆତ୍ମବିଭୋର ଆର୍ମଷ୍ଟ୍ରଙ୍ଗଙ୍କ ପାଟିରୁ ସ୍ୱତଃ ବାହାରି ଆସିଥିଲା, "ଏଇ ପାଦ ଚିହ୍ନଟି କେତେ ଛୋଟ, କିନ୍ତୁ ସମଗ୍ର ମାନବ ସମାଜର ବିକାଶରେ ଏହା କେତେ ବଡ଼ ପଦକ୍ଷେପ ସତେ" । ସେଦିନ ତାଙ୍କର ଛୋଟ ଜୋତାର ଚିହ୍ନ ଚନ୍ଦ୍ର ବକ୍ଷରେ ଅଙ୍କି ହୋଇଗଲା । ତାଙ୍କର

ବନ୍ଦି ଆଲଡ୍ରିନ୍ ମଧ୍ୟ ଚନ୍ଦ୍ର ପୃଷ୍ଠରେ ପଦାର୍ପଣ କରି ବହୁ ଫଟୋଚିତ୍ର ଉତ୍ତୋଳନ କଲେ । ନିସ୍ତବ୍ଧ ନିସ୍ତବ୍ଧ ଚନ୍ଦ୍ର ପୃଷ୍ଠରେ ସେମାନେ ୨୧ଘଣ୍ଟା ୩୬ ମିନିଟ ଅତିବାହିତ କଲେ ଏବଂ ଚନ୍ଦ୍ର ପୃଷ୍ଠରୁ ଗୋଡ଼ି, ମାଟି, ପଥର ସଂଗ୍ରହ କରି ଫେରିଆସିଲେ 'ଇଗଲ' ଯାନକୁ । ସାହସୀ ଏହି ଚନ୍ଦ୍ର ଯାତ୍ରୀମାନେ ୨୪ ତାରିଖ ଦିନ ମହାକାଶଯାନରେ ଆସି ପ୍ରଶାନ୍ତ ମହାସାଗରରେ ଅବତରଣ କଲେ । ଏହି ମହାକାଶଯାନର ଚାଳକ ଥିଲେ ମହାକାଶଚାରୀ ମାଇକଲ କଲିନ୍ସ ।

ମାତ୍ର ଏହି ସାହସିକ ଯାତ୍ରାର ସଫଳ ମହାକାଶଚାରୀଙ୍କୁ ସମ୍ବର୍ଦ୍ଧନା ଜଣାଇବାକୁ ସେତେବେଳେ ଜନ୍ କେନେଡ଼ି ବଞ୍ଚିନଥିଲେ । ତାଙ୍କର ଉତ୍ତରାଧିକାରୀ ସାର୍ ରିଚାର୍ଡ଼ ନିକ୍ସନ ଆମ୍ବବିଭୋର ହୋଇ ଟେଲିଫୋନ ଯୋଗେ ମହାକାଶଚାରୀମାନଙ୍କୁ ଧନ୍ୟବାଦ ଜଣାଇଥିଲେ ।

ମଣିଷ ନିକଟରେ ଶେଷରେ ଚନ୍ଦ୍ର ପରାଜୟ ବରଣ କରିଥିଲେ ମଧ୍ୟ ଏହି ସାହସିକ ଯାତ୍ରା ପାଇଁ ଯେ କେତେ ଅମୂଲ୍ୟ ଜୀବନ ହାନି ଘଟିଛି, ହଜାର ହଜାର ବୈଜ୍ଞାନିକ ବର୍ଷ ବର୍ଷ ଗବେଷଣା କରିଛନ୍ତି, ତାର କଳନା ନାହିଁ ।

ମହାଶୂନ୍ୟ ଭିତରେ ପୃଥିବୀର ସବୁଠାରୁ ନିକଟତମ ପ୍ରାକୃତିକ ଉପଗ୍ରହ ହେଉଛି ଚନ୍ଦ୍ର । ଏହା ଆମ ବାସସ୍ଥଳୀ ପୃଥିବୀର ଚାରିପାଖେ ଘୂରେ । ପୃଥିବୀଠାରୁ ଚନ୍ଦ୍ରର ଦୂରତା ହେଉଛି ପ୍ରାୟ ଚାରିଲକ୍ଷ କିଲୋ-ମିଟର । ଚନ୍ଦ୍ରର ବ୍ୟାସ ହେଉଛି ୩୬୦୦ କିଲୋମିଟର । ଆକାରରେ ପୃଥିବୀର ପଚିଶ ଭାଗରୁ ପ୍ରାୟ ଏକ ଭାଗ । ଏହାର ଓଜନ ପୃଥିବୀର ଓଜନର ଏକାଅଶୀ ଭାଗରୁ ଏକ ଭାଗ ମାତ୍ର । ଚନ୍ଦ୍ର ଅତି ଛୋଟ ହୋଇଥିଲେ ମଧ୍ୟ ଏହା ଆମର ଅତି ନିକଟରେ ଥିବାରୁ ଆମକୁ ଏତେ ବଡ଼ ଦେଖାଯାଏ । ଏହାର ଆକର୍ଷଣ ଶକ୍ତି ମଧ୍ୟ କମ୍ ହୋଇଥାଏ । ଚନ୍ଦ୍ରର ନିଜର ଆଲୋକ ନାହିଁ । ଚନ୍ଦ୍ର ଉପରେ ପଡୁଥିବା ସୂର୍ଯ୍ୟାଲୋକ ପ୍ରତିଫଳିତ ହେଉଥିବାରୁ ରାତିରେ ଏହା ଆମକୁ ଅତି ଉଜ୍ଜ୍ୱଳ ଦିଶେ ।

ଏହାର ଆଲୋକ ପ୍ରତିଫଳିତ ରଶ୍ମି ହୋଇଥିବାରୁ ଏହା ଶୀତଳ ଓ ଆରାମଦାୟକ । ଚନ୍ଦ୍ର ନିଜ ଅକ୍ଷ ଗୃରପାଖରେ ୨୮ ଦିନରେ ଥରେ ବୁଲିଆସିବା ସହିତ ପୃଥିବୀ ଗୃରପାଖେ ବୁଲୁଥାଏ ।

ଏହି ଚନ୍ଦ୍ର ଜୟ କରିବାକୁ ପ୍ରଥମେ ଜୁଲାଇ ୧୬ ତାରିଖରେ ମଣିଷ ପୃଥିବୀ ପୃଷ୍ଠରୁ ଯାତ୍ରା କରିଥିଲା ଏବଂ ଜୁଲାଇ ୨୪ ତାରିଖରେ ପୃଥିବୀ ପୃଷ୍ଠକୁ ଫେରି ଆସିଥିଲା । ଚଳିତ ବର୍ଷ ଜୁଲାଇ ୧୬ ତାରିଖରୁ ୨୪ ତାରିଖ ଯାଏ ସେଥିପାଇଁ ଚନ୍ଦ୍ର ଯାତ୍ରାର ତିଂଶ ବର୍ଷ ପୂର୍ତ୍ତି ସାରା ବିଶ୍ୱରେ ପାଳିତ ହୋଇଯାଇଛି । ସାରା ଯୁକ୍ତରାଷ୍ଟ୍ରରେ ଏହି ଉପଲକ୍ଷେ ଆଠଦିନ ବ୍ୟାପୀ ବିଶେଷ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଯାଇଛି । ଏହି ଉତ୍ସବର ମର୍ମବାଣୀ ହେଉଛି—"ଚନ୍ଦ୍ରଯାନରୁ ନକ୍ଷତ୍ରଲୋକ" ଯାତ୍ରା । ପ୍ରଥମ ଚନ୍ଦ୍ର ଅଭିଯାତ୍ରୀମାନେ ଏବେ ମତ ଦେଇ ମଙ୍ଗଳ, ବୁଧ, ଶୁକ୍ର, ଶନି ଗ୍ରହକୁ ଯାତ୍ରାପାଇଁ ଆହ୍ୱାନ ଜଣାଇଛନ୍ତି । ଚନ୍ଦ୍ରରେ ଏକ ସ୍ଥାୟୀ ଘାଟୀ ପ୍ରତିଷ୍ଠା କରିବାର ବ୍ୟବସ୍ଥା ମଧ୍ୟ କରାଯାଉଛି । ଚନ୍ଦ୍ରରୁ ଅଣାଯାଇଥିବା ମୃତ୍ତିକା ବର୍ତ୍ତମାନ ସୁଦ୍ଧା ଆମେରିକା ଟେକ୍ସାସ ହ୍ୟୁଷ୍ଟାନ୍‌ଠାରେ ରଖାଯାଇଛି ।

ଚନ୍ଦ୍ର ଜୟ ପରେ ଅନ୍ୟ ଗ୍ରହ, ଉପଗ୍ରହରେ ପାଦ ଦେବାକୁ ମଣିଷ ଅବାରିତ ଉଦ୍ୟମ କରିଆସିଛି । ଅନ୍ୟ ଗ୍ରହରେ "ଭିନ୍ନ ଏକ ମଣିଷ" କିଏ ଅଛି ଏ ବିଷୟ ଜାଣିବାକୁ ଅନୁସନ୍ଧିତ୍ସୁ ବିଜ୍ଞାନୀ ମଣିଷ ବହୁବାର ଚେଷ୍ଟା କରିଛି । ଏହି କ୍ଷେତ୍ରରେ ବିଶ୍ୱ ବ୍ରହ୍ମାଣ୍ଡର ବିଶାଳତା ଓ ବ୍ୟାପକତା କେବେହେଲେ ମଣିଷକୁ ବାଧା ଦେଇନାହିଁ । ମାତ୍ର ଏବେ ମଧ୍ୟ ଆମେ ଯେତେବେଳେ ବିଶ୍ୱବ୍ରହ୍ମାଣ୍ଡର ବ୍ୟାପକତା ବିଷୟରେ ଆଲୋଚନା କରୁ ସେତେବେଳେ ସ୍ୱତଃ ଆମକୁ ହତାଶ ହେବାକୁ ପଡ଼ିଥାଏ । ପୃଥିବୀ ନିକଟତମ ଉପଗ୍ରହ ଚନ୍ଦ୍ର ଓ ଆମେ ମଣିଷ ସତେ କେତେ କ୍ଷୁଦ୍ର ସେ କଥା ଭାବିଲେ ହତାଶ ଲାଗେ । ତେଣୁ ଅନ୍ୟ ଗ୍ରହ ଓ ନକ୍ଷତ୍ରରେ ଥିବା ଜୀବନର ସତ୍ତା ଆବିଷ୍କାର କରିବା କିପରି କଷ୍ଟକର ତାହା ସହଜରେ ଅନୁମେୟ । ମାତ୍ର ଏସବୁ ସତ୍ତ୍ୱେ ମଣିଷ ଏହି

କାର୍ଯ୍ୟରେ ନ ପଛୁଇ କ୍ରମେ ଅଗ୍ରସର ହୋଇ ଚାଲିଛି ଏବଂ ବର୍ତ୍ତମାନ ସୁଦ୍ଧା ଚନ୍ଦ୍ର ଜୟ ପରେ ସୌରମଣ୍ଡଳର ଅନ୍ୟ ଗ୍ରହକୁ ମହାକାଶଯାନ ପଠାଇ ପାରି ତଥ୍ୟ ସଂଗ୍ରହ କରୁଛି ।

ବିଜ୍ଞାନର ପ୍ରଗତି ମଧ୍ୟରେ ମହାକାଶ ଗବେଷଣାକୁ ଏକ ମହତ୍ତ୍ୱ-ପୂର୍ଣ୍ଣ କାର୍ଯ୍ୟକ୍ରମ ବୋଲି ବର୍ଣ୍ଣନା କରାଯାଉଛି । ଏବେ ମହାକାଶ ଗବେଷଣା କ୍ଷେତ୍ରରେ ଅନେକ ଦେଶ ଆଗଭର ହୋଇଥିଲେ ସୁଦ୍ଧା ପ୍ରଥମେ ସୋଭିଏତ୍ ୟୁନିୟନ ଓ ଯୁକ୍ତରାଷ୍ଟ୍ର ଆମେରିକା ଏ ଦିଗରେ କାର୍ଯ୍ୟ ଆରମ୍ଭ କରିଥିଲେ । ଏହି କାର୍ଯ୍ୟକ୍ରମ ଅନୁସାରେ ସୋଭିଏତ୍ ୟୁନିୟନ ୧୯୫୭ ମସିହା ଅକ୍ଟୋବର ୪ ତାରିଖରେ ପ୍ରଥମ କୃତ୍ରିମ ଉପଗ୍ରହ ସ୍ପୁଟ୍‌ନିକ-୧ ମହାଶୂନ୍ୟକୁ ପ୍ରେରଣ କରିଥିଲା । ଏହାର ୪ ମାସ ପରେ ୧୯୫୮ ଫେବୃୟାରୀ ମାସରେ ଆମେରିକା ମଧ୍ୟ 'ଏକ୍‌ସପ୍ଲୋରର୍-୧' ନାମକ ଏକ କୃତ୍ରିମ ଉପଗ୍ରହ ମହାକାଶକୁ ପ୍ରେରଣ କରିଥିଲା । ୧୯୬୧ ମସିହା ଅପ୍ରେଲ୍ ୧୨ ତାରିଖରେ ସୋଭିଏତ ମହାକାଶଚାରୀ ୟୁରୀ ଗାଗାରିନ ପ୍ରଥମେ ମହାକାଶକୁ ଯାଇ ସେତେବେଳେ ଏକ ଆଲୋଡ଼ନ ସୃଷ୍ଟି କରିଥିଲେ । ୧୯୬୧ ମସିହା ମଇ ମାସରେ ତତ୍‌କାଳୀନ ଆମେରିକାର ରାଷ୍ଟ୍ରପତି ଜନ୍ ଏଫ. କେନେଡ଼ି ଚନ୍ଦ୍ର ଅଭିଯାନ କାର୍ଯ୍ୟକ୍ରମ "ଆପୋଲ ଅଭିଯାନ"କୁ ଉଦ୍‌ଘାଟିତ କରିଥିଲେ । ତାଙ୍କର ସ୍ୱପ୍ନ ଥିଲା ଯେ ୧୯୭୦ ସୁଦ୍ଧା ଆମେରିକାର ମହାକାଶଚାରୀ ଚନ୍ଦ୍ର ମାଟିରେ ପାଦ ଦେବେ ।

ଏହି ଆପୋଲ କାର୍ଯ୍ୟକ୍ରମ ଅନୁସାରେ ୧୯୬୭ ମସିହା ଫେବୃୟାରୀ ୨୭ ତାରିଖ ଦିନ ଆପୋଲୋ ଯାନ ୩ ଜଣ ମହାକାଶଚାରୀଙ୍କୁ ବହନ କରି ମହାକାଶକୁ ପ୍ରେରିତ ହେବାର ସ୍ଥିର ହେଲା । ମାତ୍ର ସେଦିନ ଯାନ ପ୍ରେରଣ ବେଳେ ଦୁର୍ଘଟଣା ଘଟିବାରୁ ସେହି ଯାନରେ ଅଗ୍ନିକାଣ୍ଡ ଓ ବିସ୍ଫୋରଣ ଘଟି ୩ ଜଣ ଯାକ ଚନ୍ଦ୍ର ମହାକାଶଯାତ୍ରୀ ପ୍ରାଣ ହରାଇ-ଥିଲେ । ସେତେବେଳେ ଏହି ଦାରୁଣ ଘଟଣା ମହାକାଶ ଗବେଷଣା କ୍ଷେତ୍ରରେ ଏକ ଦୁଃଖଦ ଧକ୍‌କା ପହଞ୍ଚାଇଥିଲା । ସେହିବର୍ଷ ନଭେମ୍ବର

ମାସରେ ଏକ ମାନବବାହୀ ରକେଟ ଆପୋଲ ଯାନକୁ ମହାକାଶକୁ ନେବାରେ ସକ୍ଷମ ହୋଇପାରିଥିଲା ।

ଏହାର ପ୍ରାୟ ଏକ ବର୍ଷ ପରେ ୧୯୬୮ ଅକ୍ଟୋବର ୧୧ ତାରିଖରେ ଆପୋଲ-୭ ଯାନ ୩ ଜଣ ମହାକାଶଚାରୀଙ୍କୁ ନେଇ ଅନ୍ତରୀକ୍ଷକୁ ଯାତ୍ରା କଲା । ଏହାର ଏକ ମାସ ପରେ ଆପୋଲ-୮ ଯାନ ସଫଳତାର ସହ ମହାକାଶ ପରିକ୍ରମା କରି ଚନ୍ଦ୍ରର ୪ ପଟରେ ପ୍ରଦକ୍ଷିଣ ପରେ ଆମେରିକାର ମହାକାଶ ବୈଜ୍ଞାନିକମାନେ ଚନ୍ଦ୍ର ବିଷୟରେ ଅଧିକ ତଥ୍ୟ ଜାଣିବାକୁ ପାଇଲେ ।

ଏହାପରେ ଶେଷ ଚନ୍ଦ୍ର ଯାତ୍ରା ଆରମ୍ଭ ହେଲା ୧୯୬୯ ମସିହା ଜୁଲାଇ ୧୬ ତାରିଖ ଦିନ । ଆପୋଲ-୧୧ ରେ ତିନିଜଣ ଚନ୍ଦ୍ରଯାତ୍ରୀ ଚନ୍ଦ୍ର ପୃଷ୍ଠରେ ଅବତରଣ କଲେ । ମାନବ ସମାଜର ଦୃଢ଼ ସଂକଳ୍ପ, ସାହସିକତାର ଫଳସ୍ୱରୂପ ମଣିଷ ଶେଷରେ ଚନ୍ଦ୍ର ଜୟୀ ହେଲା ।

ଏବେ ଚନ୍ଦ୍ର ବିଜୟର ୨୦ ବର୍ଷ ବିତିଯାଇଛି । ମହାକାଶ ଗବେଷଣା କ୍ଷେତ୍ରରେ ଏବେ ବହୁ ଉଲ୍ଲେଖନୀୟ ପ୍ରଗତି ହୋଇଛି । ବିଭିନ୍ନ ଗ୍ରହ ସମ୍ବନ୍ଧରେ ଅନୁସନ୍ଧାନ କରିବାକୁ ମଣିଷ ବହୁ ମାନବବାହୀ ଯାନ ପ୍ରେରଣ କରିଛି । ମାତ୍ର ଚନ୍ଦ୍ର ପୃଷ୍ଠରେ ଅବତରଣ ଏବେ ସୁଦ୍ଧା ମହାକାଶ ଗବେଷଣାର ସର୍ବପ୍ରଥମ ଓ ସର୍ବପ୍ରଧାନ ବିଜୟ ଭାବେ ପରିଗଣିତ ହେଉଛି ।

ଗତ- ୧୨ ବର୍ଷ ତଳେ ଆମେରିକା ଦ୍ୱାରା ମହାକାଶ ତଥା ସୌରମଣ୍ଡଳର ଅନ୍ୟାନ୍ୟ ଗ୍ରହ ଉପଗ୍ରହ ବିଷୟରେ ତଥ୍ୟ ସଂଗ୍ରହ କରିବାକୁ ମହାକାଶକୁ ପ୍ରେରଣ କରାଯାଇଥିବା ଭଏଜର-୨ ଯାନ ବୃହସ୍ପତି, ଶନି ଓ ୟୁରାନସ ଗ୍ରହ ବାଟ ଦେଇ ଗତି କରି ଏବେ ନିକଟରେ ବରୁଣ ଗ୍ରହଠାରୁ ମାତ୍ର ୪୯୦୫ କିଲୋମିଟର ଦୂରରେ ରହି ଏହି ଗ୍ରହ ବିଷୟରେ ଅନେକ ଅଜଣା ତଥ୍ୟ ପୃଥିବୀବାସୀଙ୍କୁ ଜଣାଇବା ସଙ୍ଗେ ସଙ୍ଗେ ଏହି ଗ୍ରହର ଆଉ ତିନୋଟି ନୂତନ ଚନ୍ଦ୍ର ଥିବା ବିଷୟରେ

ନୂତନ ତଥ୍ୟ ପ୍ରଦାନ କରିଛି । ଏହି ଉପଗ୍ରହ ପଠାଇଥିବା ଫଟୋ-ଚିତ୍ରରୁ ବରୁଣ ଗ୍ରହ ପୃଷ୍ଠରେ ମେଘ ଆସ୍ତରଣ ଥିବା ଏବଂ ଏହାର ଦକ୍ଷିଣ ଗୋଲାର୍ଦ୍ଧରେ ଏକ ବିଶାଳ କୃଷ୍ଣ ବିନ୍ଦୁ ଥିବା ଏବଂ ଏକ ନୀଳରଙ୍ଗର ବାୟୁମଣ୍ଡଳ ଥିବା କଥା ଜଣାପଡ଼ିଛି । ମେଘମାଳା ଓ ପ୍ରଚଣ୍ଡ ଝଡ଼ ବାତ୍ୟାରୁ ଏହି ଗ୍ରହରେ ଶକ୍ତିର ଅସ୍ତିତ୍ୱ ଥିବା କଥା ମଧ୍ୟ ଜଣାପଡ଼ିଛି । ପୃଥିବୀ ପାଉଥିବା ସୂର୍ଯ୍ୟ ରଶ୍ମି ତୁଳନାରେ ବରୁଣ ଗ୍ରହ ପ୍ରାୟ ଏକ ସହସ୍ରାଂଶ ଭାଗ ସୂର୍ଯ୍ୟରଶ୍ମି ପାଇଥାଏ । ମାତ୍ର ଏସବୁ ସତ୍ତ୍ୱେ ବରୁଣ ଗ୍ରହରେ ଉତ୍ତାପର ଉତ୍ସ କଣ ଏବଂ ଏହି ଗ୍ରହରେ କୌଣସି ଜୀବନ୍ତ ବସ୍ତୁ ଅଛି କି ନାହିଁ ସେ ବିଷୟରେ ବର୍ତ୍ତମାନ ସୁଦ୍ଧା କୌଣସି ସଠିକ ତଥ୍ୟ ମିଳିନାହିଁ । ଉପଗ୍ରହ ପଠାଇଥିବା ବରୁଣ ଗ୍ରହ ଫଟୋଚିତ୍ର ବୈଜ୍ଞାନିକମାନଙ୍କୁ ଏବେ ଗୋଲକଧନ୍ଦାରେ ପକାଇଛି । ଏହା ବ୍ୟତୀତ ଭଏଜର-୨ ପଠାଇଥିବା ତଥ୍ୟରୁ ବରୁଣ ଗ୍ରହରେ ଚୁମ୍ବକୀୟ କ୍ଷେତ୍ର ଥିବାର ମଧ୍ୟ ଜଣାପଡ଼ିଛି । ଏହି ଗ୍ରହରେ ଉଦଜାନ ଓ ମିଥେନ ଗ୍ୟାସ ମଧ୍ୟ ରହିଛି । ଏହି ଗ୍ରହ ପୃଷ୍ଠର ରାସାୟନିକ ଗଠନ, ତାପମାତ୍ରା ଓ ବାୟୁମଣ୍ଡଳ ବିଷୟରେ ବର୍ତ୍ତମାନ ଗବେଷଣା ଚାଲିଛି । ଏହା ବ୍ୟତୀତ ଭଏଜର ଯାନ ମଧ୍ୟ ବୃହସ୍ପତି, ଶନି ଗ୍ରହ ବିଷୟରେ ବହୁ ତଥ୍ୟ ଓ ଫଟୋଚିତ୍ର ପଠାଇଛି । ଏହି ସବୁ ଗ୍ରହରେ କୌଣସି ଜୀବନ୍ତ ପଦାର୍ଥ ଅଛି କି ନାହିଁ ସେ ବିଷୟରେ ଗବେଷଣା ଚାଲିଛି । ଜୀବନ୍ତ ପଦାର୍ଥ ନଥିଲେ ମଧ୍ୟ ଏହା ପୃଷ୍ଠରେ କୌଣସି ମୂଲ୍ୟବାନ ଧାତୁ, ଶିଳାଖଣ୍ଡ ଇତ୍ୟାଦି ବିଷୟରେ ଜାଣିବାକୁ ମଣିଷ ଆଗ୍ରହ ପ୍ରକାଶ କରି ନିଜର ଅଧ୍ୟବସାୟ ଜାରି ରଖିଛି । ମାତ୍ର ଆଜିସୁଦ୍ଧା ଅନ୍ୟ କୌଣସି ଗ୍ରହ, ଉପଗ୍ରହ, ନକ୍ଷତ୍ରମଣ୍ଡଳରେ ଜୀବନର ସତ୍ତା ବିଷୟରେ କୌଣସି ତଥ୍ୟ ମିଳିନାହିଁ ।

ଚନ୍ଦ୍ର ଜୟର ୨୦ ବର୍ଷ ପରେ ଚନ୍ଦ୍ର ପୃଷ୍ଠକୁ ଯାଇଥିବା ଯାନ ଠାରୁ ବହୁ ଉନ୍ନତ ଯାନ ତିଆରି କରିଯାଇ ପାରିଛି । ଏବେ ଚନ୍ଦ୍ର ପୃଷ୍ଠରେ କିପରି ବସତି ସ୍ଥାପନ କରିଯିବ ସେ ସମ୍ପର୍କରେ ଆମେରିକାରେ

ଏକ କାର୍ଯ୍ୟକ୍ରମ ହାତକୁ ନଆଯାଇ ଚୂଡ଼ାନ୍ତ କାର୍ଯ୍ୟକ୍ରମ ପ୍ରସ୍ତୁତ କରା-ଯାଇଛି । ଏକବିଂଶ ଶତାବ୍ଦୀର ଆରମ୍ଭ ପୂର୍ବରୁ ଚନ୍ଦ୍ର ପୃଷ୍ଠରେ ମାନବ ବସତି ସ୍ଥାପନ କରାଯିବାର ଆଶା ନେଇ ବଜ୍ଞାନୀ ମାନବ ଗବେଷଣାରେ ଆଗେଇ ଚାଲିଛି । ବିଫଳତା ଆଡ଼କୁ ନ ଚାହିଁ ମାନବର ଏହି ଜୟ-ଯାତ୍ରାର ଶେଷ କେବେ ? ସଫଳତା ହିଁ ଏହି ଜୟଯାତ୍ରାର ଶେଷସ୍ତମ୍ଭ ।



# ଓଡ଼ିଶା ମରୁଭୂମି ହେବ କେବେ ?

ପ୍ରାକୃତିକ ପରିବେଶ ଓ ସୌନ୍ଦର୍ଯ୍ୟପୂର୍ଣ୍ଣ ପୃଥିବୀ କ୍ରମେ ଶ୍ରୀହୀନ ହୋଇପଡ଼ିବାରେ ଲାଗିଛି । ପୂର୍ବେ ଯେଉଁଠାରେ ଘଞ୍ଚ ଅଗନାଅଗମ୍ୟ ଜଙ୍ଗଲ ଥିଲା, ଲୋକେ ଏପରିକି ଦିନବେଳେ ଗାଡ଼ି ନେଇ ଯିବାକୁ ରାସ୍ତାରେ ଡରୁଥିଲେ, ଏହା ବର୍ତ୍ତମାନ ସବୁ ଯେପରି ଉଭେଇ ଗଲାଣି । ଘଞ୍ଚ ଜଙ୍ଗଲ, ଜୀବଜନ୍ତୁ ଭରା ପାହାଡ଼ପର୍ବତ, ଝରଣା, ମୂଲ୍ୟବାନ କାଠ ପ୍ରଭୃତି ଲୋପ ପାଇ ସେସବୁ ସ୍ଥଳରେ ବର୍ତ୍ତମାନ ମାନବ ବସତି, ଶିଳ୍ପ-କାରଖାନାମାନ ଗଢ଼ି ଉଠିବାରେ ଲାଗିଛି । ଆମ ଦେଶ ତଥା ଆମ ରାଜ୍ୟର କାଁ ଭାଁ କେତେକ ସଂରକ୍ଷିତ ଜଙ୍ଗଲ ଅଞ୍ଚଳକୁ ଛାଡ଼ିଦେଲେ କୌଣସିଠାରେ ବିସ୍ତୀର୍ଣ୍ଣ ଘଞ୍ଚ ଜଙ୍ଗଲ ନାହିଁ । ଏହି ସଂରକ୍ଷିତ ଜଙ୍ଗଲ ଏବେ ମଧ୍ୟ ସ୍ୱାର୍ଥପରତା ଓ ଦୁର୍ନୀତିଗ୍ରସ୍ତ ଲୋକଙ୍କ ଯୋଗୁ କ୍ରମେ ନଷ୍ଟ ପଥରେ ଆଗେଇ ଚାଲିଛି ।

କ୍ରମାଗତ ଜଙ୍ଗଲ ସମ୍ପଦ ନଷ୍ଟ ହେବାଦ୍ୱାରା ପଶୁପକ୍ଷୀଙ୍କ ବଂଶ ନାଶ ହେବା ସଙ୍ଗେ ସଙ୍ଗେ ବର୍ଷା ଠିକ୍ ସମୟରେ ହେଉନାହିଁ । ଚିର ପ୍ରବାହିତ କୁଳୁକୁଳୁ ଝରଣା ଶୁଷ୍କ, ଜଳଶୂନ୍ୟ ହୋଇ ପଡ଼ିରହିଛି । ବହୁ ହରିଣ, ପ୍ରକୃତିବନ୍ଧୁ କୀଟପତଙ୍ଗ, ଜୀବଜନ୍ତୁଙ୍କ ବଂଶ କ୍ରମେ ପୃଥିବୀ ପୃଷ୍ଠରୁ ଲୋପ ପାଇବାରେ ଲାଗିଛି ।

ଏବେ ଆମ ଦେଶର ବିଜ୍ଞାନ ଓ ପରିବେଶ ବିଭାଗ ଦ୍ୱାରା କରାଯାଇଥିବା ସର୍ଭେରୁ ଜଣାପଡ଼ୁଛି ଯେ ବର୍ତ୍ତମାନ ସୁଦ୍ଧା ଆମ ଦେଶର ପ୍ରାୟ ୩୫୦ ପ୍ରକାରର ସ୍ତନ୍ୟପାୟୀ ପ୍ରାଣୀ, ୧୨୦୦ ପ୍ରକାରର ସୁନ୍ଦର ପକ୍ଷୀ, ୨୦୦୦ରୁ ଅଧିକ ପ୍ରକାରର କୀଟପତଙ୍ଗଙ୍କର ବଂଶ ସମୂଳେ ବିଲୋପ ହୋଇଗଲାଣି । ଏହା କେବଳ ଜଙ୍ଗଲ ଧ୍ୱଂସ ଦ୍ୱାରା ଏବଂ

ଅବାଧରେ ସେମାନଙ୍କୁ ହତ୍ୟା କରିବା ଦ୍ୱାରା ତଥା ପରିବେଶ ନଷ୍ଟ ଦ୍ୱାରା ସମ୍ଭବ ହେଉଛି ।

ଓଡ଼ିଶାର ଜଙ୍ଗଲରୁ ଅରଣା ମଇଁଷି, ଅହିରାଜସାପ ଓ ଗୋଟିଏ ଜାତିର ହରିଣ, ଶିତାବାଘ, ଗୟଳ, କୋଚିଲାଖାଇ ଚଢ଼େଇ, କୁମ୍ଭୀର ପ୍ରଭୃତି ବନ୍ୟ ପ୍ରାଣୀ ତଥା ମାନବସମାଜର ବହୁ ଉପକାରୀ ପ୍ରାଣୀ, କୀଟପତଙ୍ଗ ଲୋପ ପାଇଯିବାକୁ ବସିଲେଣି । ପୂର୍ବପରି ଏବେ ଆମ ଆକାଶରେ ଆଉ ଶଂଖଚିଲ ଉଡ଼ୁନାହାଁନ୍ତି, ପୋଖରୀରେ ପାତିହଂସ ପହଁରୁ ନାହିଁ । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାକୁ ଖାଦ୍ୟ ଯୋଗାଇବାକୁ ଆମ୍ଭେମାନେ ବାଧ୍ୟ ହୋଇ କୀଟନାଶକ ଔଷଧ ବ୍ୟବହାର କରି ଅଧିକ ଅମଳକ୍ଷମ ଫସଲ ଉତ୍ପାଦନ କରୁଛୁ । ଏହାଫଳରେ ବିଲବାଡ଼ିରେ ଥିବା ଚିଲ, ପକ୍ଷୀ, ବେଙ୍ଗ, ସାପ ମୃତ୍ୟୁ ବରଣ କରୁଛନ୍ତି । ବେଙ୍ଗ ମରିଯିବା ଦ୍ୱାରା ମଶାମାନଙ୍କ ବଂଶ ଅସମ୍ଭବ ଭାବରେ ବଢ଼ିବାରେ ଲାଗିଛି । ଜମିର ଉର୍ବରତା ବଢ଼ାଉଥିବା ଜିଆ ଓ ବହୁ ଉପକାରୀ ବିଭିନ୍ନ ପୋକ ମଧ୍ୟ ଏବେ ମରିଯାଉଛନ୍ତି । ଏଥିପ୍ରତି ଆମର କାହାର ଲକ୍ଷ ଅଛି କି ? କଣ ମଣିଷ କେବଳ ପୃଥିବୀ ପୃଷ୍ଠରୁ ଏହି ସବୁ ଜୀବଙ୍କୁ ନିର୍ବାଧରେ ମାରି ନିଜେ ବଞ୍ଚିରହିବାର ଅଧିକାର ପାଇଛି କି ?

ଆମ ଦେଶରେ ପରିବେଶର ସୁରକ୍ଷା ପାଇଁ ସମଗ୍ର ଭୂଭାଗର ଶତକଡ଼ା ୩୩ ଭାଗ ଜମିରେ ଜଙ୍ଗଲ ରହିବାର ଆବଶ୍ୟକତା ଥିବା ବେଳେ ଭାରତବର୍ଷରେ ଏହି ସଂଖ୍ୟା ବର୍ତ୍ତମାନ ଶତକଡ଼ା ୧୦ ଭାଗରେ ପହଞ୍ଚିଛି । ଏବଂ ଏହା ଦ୍ରୁତ ଗତିରେ କମିବାରେ ଲାଗିଛି । ସ୍ୱାଧୀନତା ପ୍ରାପ୍ତି ବେଳକୁ ଭାରତରେ ମୋଟ ୭ କୋଟି ୫୦ ଲକ୍ଷ ହେକ୍ଟର ଜମିରେ ଜଙ୍ଗଲ ଥିଲା । କିନ୍ତୁ ଦ୍ରୁତ ଶିଳ୍ପ ପ୍ରତିଷ୍ଠା, ସହରୀ ସଭ୍ୟତାର ବିକାଶ ଓ ଜନସଂଖ୍ୟା ବୃଦ୍ଧି ଫଳରେ ତଥା ବେଆଇନ ଭାବରେ ଅବାଧରେ ଗଛକଟା ଚାଲୁରହିବାରୁ ଜଙ୍ଗଲ ସମ୍ପଦ କ୍ରମେ ଲୋପ ପାଇଯାଉଛି ।

୧୯୫୨ ରୁ ୧୯୮୨ ମସିହା ମଧ୍ୟରେ ଭାରତବର୍ଷରୁ ୧୫ ହେକ୍ଟର

ବା ପ୍ରତି ମିନଟରେ ପ୍ରାୟ ସାଢ଼େ ୩ ହେକ୍ଟର ବା ସାଢ଼େ ସାତ ଏକର ଜଙ୍ଗଲ ଧ୍ୱଂସ ହେଉଥିଲା । ଏବେ ଏହି ସଂଖ୍ୟା ବଢ଼ିଯାଇଛି । ଯେପରି ଜଣାପଡ଼ୁଛି ବିଂଶ ଶତାବ୍ଦୀର ଶେଷ ବେଳକୁ ଯଦି ଏହି ପ୍ରକ୍ରିୟା ଚାଲୁ ରହେ ତେବେ ଭାରତରେ ଆଉ ବିଶେଷ ଜଙ୍ଗଲ ସମ୍ପଦ ନଥିବ ।

କେବଳ ଭାରତ ନୁହେଁ ସାରା ପୃଥିବୀର ବିଭିନ୍ନ ଅଞ୍ଚଳରେ ଥିବା ଘଞ୍ଚ ଜଙ୍ଗଲ ଲୋପ ପାଇବା ଫଳରେ ପୃଥିବୀର ଜଳବାୟୁରେ ଗତ ଦଶନ୍ଧି ମଧ୍ୟରେ ଘୋର ଅନିୟମିତତା ଦେଖାଦେଇଛି । ଘନ ଜଙ୍ଗଲ ତଥା ପ୍ରଭାତପୂର୍ଣ୍ଣ ଆଫ୍ରିକା ମହାଦେଶରେ ଗତ ଦଶବର୍ଷ ଧରି ଘୋର ମରୁଡ଼ି ଓ ଦୁର୍ଭିକ୍ଷ ଦେଖାଦେଇଛି । ଲକ୍ଷ ଲକ୍ଷ ଲୋକ ବର୍ଷା ଅଭାବରୁ ଘୋର ମରୁଡ଼ି ମଧ୍ୟରେ ମୃତ୍ୟୁବରଣ କରିଛନ୍ତି । ଅଧିକାଂଶ ଲୋକ ଅସ୍ଥିକଙ୍କାଳ ସାର ହୋଇ ନାମକୁ ମାତ୍ର ବଞ୍ଚି ରହିଛନ୍ତି ।

ଏବେ ଦକ୍ଷିଣ ଆଫ୍ରିକାର ବ୍ରାଜିଲ ଦେଶ ଅନ୍ତର୍ଗତ ଆମାଜନ ନଦୀ କୂଳରେ ଥିବା ଘଞ୍ଚ ଜଙ୍ଗଲ ଉପରେ ଆନ୍ତର୍ଜାତିକ କାଠ ଗୋଳିର ବେପାରୀଙ୍କ ଆଖି ପଡ଼ିଛି । ଏମାନେ ଏହି ଜଙ୍ଗଲରୁ କାଠ କାଟି ଏହି ପ୍ରାକୃତିକ ସ୍ଥାନକୁ ନଷ୍ଟ କରିବାକୁ ଆରମ୍ଭ କଲେଣି । ଏହି ଜଙ୍ଗଲ ଧ୍ୱଂସ ହେଲେ ପୃଥିବୀର ଜଳବାୟୁ ଉପରେ ଏହାର ପ୍ରଭାବ ପଡ଼ିବ ଏବଂ ପୃଥିବୀର ଜଳବାୟୁରେ ଘୋର ପରିବର୍ତ୍ତନ ଦେଖାଦେବ । ପୃଥିବୀର ଉତ୍ତାପ ବହୁତ ବଢ଼ିଯିବ, ମୌସୁମୀବାୟୁ ପ୍ରବାହ ମଧ୍ୟ ଅନିୟମିତ ହେବ ଏବଂ ସାହାରା ମରୁଭୂମି ତଥା ବିଭିନ୍ନ ଦେଶରେ ଥିବା ମରୁଭୂମି କାୟା-ବିସ୍ତାର କରିବ ବୋଲି ବିଶେଷଜ୍ଞମାନେ ସତର୍କବାଣୀ ଶୁଣାଇଲେଣି । ମାତ୍ର ଏଥିପ୍ରତି କିଏ କଣ ଦୃଷ୍ଟି ଦେଉଛି ?

ଜଙ୍ଗଲ ସମ୍ପଦର ଉପାଦେୟତା ବିଷୟରେ ପରିବେଶବିଜ୍ଞାନୀମାନେ କହିଛନ୍ତି ଯେ, ବନ୍ୟା ହାଉରୁ ଦେଶକୁ ରକ୍ଷା କରି ଗୋଟିଏ ସ୍ଥାନରେ ଥିବା ଜଙ୍ଗଲ ପ୍ରାୟ ୪୦ ହଜାର କୋଟି ଟଙ୍କା ବଞ୍ଚାଇଥାଏ । ଏହି ଜଙ୍ଗଲ ସମ୍ପଦ ମୃତ୍ତିକା ସଂରକ୍ଷଣ କରି ଏହି ବାଗରେ ମଧ୍ୟ ପ୍ରାୟ

୩୦ ହଜାର କୋଟି ଟଙ୍କା ଓ ଜାଳେଣୀ କାଠ ବାବଦରେ ଗୋଟିଏ ଜଙ୍ଗଲ ଯେତକ ଅର୍ଥ ଦେଇଥାଏ ତାହା ପ୍ରାୟ ୪୫ ହଜାର କୋଟି ଟଙ୍କାର ଗୋଟିଏ କାରଖାନା ସହିତ ସମାନ ।

ଜମି ଉପରେ ଏକ ଇଞ୍ଚ ମାଟି ତିଆରି ହେବାକୁ ଶହ ଶହ ବର୍ଷ ଲାଗିଥାଏ ମାତ୍ର ଜଙ୍ଗଲ ନ ଥିବାରୁ ବର୍ଷା ଜଳ ସିଧାସଳଖ ଉପର ଉର୍ବର ମାଟିକୁ ଧୋଇନେଇ ନଦୀ ଗର୍ଭକୁ ଚାଲିଯାଏ ଓ ନଦୀ ମୁହାଣରେ ଏହି ମାଟି ଜମା ହେବା ଫଳରେ ଜଳ ନିଷ୍କାସନ ନ ହୋଇପାରି ପ୍ରବଳ ବନ୍ୟା ହୁଏ । ଏଣେ ଉର୍ବର ମୃତ୍ତିକା ଚାଲିଯିବାରୁ ମାଟି ଅନୁର୍ବର ହୁଏ । ଏହା ବ୍ୟତୀତ ଜଙ୍ଗଲ ନଷ୍ଟ ହେବାଦ୍ୱାରା ବର୍ଷା ଜଳକୁ କେହି ଧରି ନ ରଖିବାରୁ ବର୍ଷା ଜଳ ଆଉ ମାଟି ତଳକୁ ନଯାଇ ସିଧା ନଦୀକୁ ବୋହିଯାଏ । ଫଳରେ ଭୂତଳ ଜଳସ୍ତର ବୃଦ୍ଧି ପାଏ ନାହିଁ । ଆମେ ଖରାଦିନେ ବାଧ୍ୟ ହୋଇ ପାନୀୟଜଳ ପାଇବା ପାଇଁ ଅଧିକ ଗଭୀର କୂପ ଖୋଳିବାଦ୍ୱାରା ଭୂତଳ ଜଳସ୍ତର କ୍ରମେ ତଳକୁ ତଳକୁ ଚାଲିଯାଏ । ପରବର୍ତ୍ତୀ ବର୍ଷା ଋତୁରେ ଭୂତଳ ଜଳସ୍ତର ବଢ଼ୁନଥିବାରୁ ଆଉ କେତେବର୍ଷ ପରେ ଆମେ ଭୂତଳ ପାନୀୟଜଳ ପାଇବାରୁ ବଞ୍ଚିତ ହେବା ପରି ଅବସ୍ଥା ଆସି ଉପୁଜିଲାଣି । ଏବେ ଓଡ଼ିଶାର କେତେକ ଅଞ୍ଚଳରେ ଗଭୀର ନଳକୂପରୁ ଆଶାନୁରୂପ ପାନୀୟ ଜଳ ମିଳୁନାହିଁ ।

ତଥାପି ଏବେ ମଧ୍ୟ ସମୟ ଅଛି ଆମକୁ ଜଙ୍ଗଲ ସମ୍ପଦର ରକ୍ଷା କରି ପ୍ରକାରାନ୍ତରେ ଭବିଷ୍ୟତରେ ମାନବ ସମାଜକୁ ରକ୍ଷା କରିବାର ଦାୟିତ୍ୱ ବହନ କରିବାକୁ ହେବ ନଚେତ ଲେଡ଼ିଗୁଡ଼ି ଥରେ କହୁଣୀକୁ ବୋହିଗଲେ ଆଉଥରେ ଫେରିଆସିବ ନାହିଁ ।

ପୂର୍ବେ ଆମ ଓଡ଼ିଶା ଉପକୂଳ ତଥା ଦେଶର ଉପକୂଳ ଅଞ୍ଚଳରେ ଘଞ୍ଚ ଜଙ୍ଗଲ ଥିଲା । ଆମ ଓଡ଼ିଶାର ଉପକୂଳରେ ଘଞ୍ଚ ହେନ୍ତାଳବଣ ଥିଲା, କୋଣାର୍କ ଅଞ୍ଚଳରେ ଝାଉଁ ଜଙ୍ଗଲ ପୂର୍ଣ୍ଣ ଥିଲା । ଏହି ଜଙ୍ଗଲ ଉପକୂଳକୁ ପ୍ରବଳ ଝଡ଼ବାତ୍ୟା ତଥା ସାମୁଦ୍ରିକ ଝଡ଼ରୁ

ରକ୍ଷା କରୁଥିଲା । ମାତ୍ର ଏବେ ଓଡ଼ିଶା ଉପକୂଳରେ ଆଉ ହେନ୍ତାଳବଣ ନାହିଁ । କୋଣାର୍କ ଓ ରାଜନଗର ଅଞ୍ଚଳର ଝାଉଁବଣ ସମ୍ପୂର୍ଣ୍ଣ ନଷ୍ଟ ହେବା ଅବସ୍ଥାକୁ ଆସିଗଲାଣି । ଏହାଫଳରେ ସାମୁଦ୍ରିକ ଝଡ଼ ଓ ଜୁଆର ସିଧାସଳଖ ଉପକୂଳ ଲଂଘନ କରି ବହୁ ଧନଜୀବନ ନାଶ କରି ଉପକୂଳର ପ୍ରଭୂତ କ୍ଷତିସାଧନ କରୁଛି । କେବଳ ସେତିକି ନୁହେଁ ବହୁ ମୂଲ୍ୟବାନ ଔଷଧ ବୃକ୍ଷ, ଶାଳତେଲ, ଝୁଣା, ହରିଡ଼ା, ଚେନ୍ତୁଳି, ବାହାଡ଼ା, ଅଁଳା, ଛଣ, କାଜୁ ଉତ୍ପାଦନ କ୍ରମେ କମିଗଲାଣି ଓ ଦୁର୍ମୂଲ୍ୟ ହେଲାଣି । ପୂର୍ବେ ଜଙ୍ଗଲରୁ ମିଳୁଥିବା ଖରସାଣ ପତ୍ର ନାମକ ଏକ ଗଛର ପତ୍ରକୁ କାଠ, ଶିଙ୍ଗ ଉପରେ ଘଷି ସୁନ୍ଦର ପାଲିସ କରାଯାଉଥିଲା ମାତ୍ର ଏବେ ସେ ଗଛ ଆଉ ମିଳୁନାହିଁ । ଏହା ସହିତ ବହୁ ଦୁର୍ଲ୍ଲଭ ଗଛ ମଧ୍ୟ ଲୋପ ହୋଇଗଲାଣି ।

ଏବେ ଜଙ୍ଗଲ ସମ୍ପଦ ନଷ୍ଟ ହେବାଦ୍ୱାରା ଆମ ଦେଶରେ ବର୍ଷା ଋତୁ ୪ ମାସ ବଡ଼ି ଓ ଖରାଋତୁ ଗୃହମାସ ଘୋର ମରୁଡ଼ି ଅବସ୍ଥା ସୃଷ୍ଟି ହେଉଛି । ଜଙ୍ଗଲରେ ବାଘ ସଂଖ୍ୟା କମିଯିବା ବିଷୟରେ ଥରେ ମହାତ୍ମା ଗାନ୍ଧୀ କହିଥିଲେ ଯେ ଜଙ୍ଗଲରେ ବାଘ ସଂଖ୍ୟା କମିଯିବାର କାରଣ ସହରରେ ବାଘ ସଂଖ୍ୟା ପ୍ରତିଦିନ ବଢ଼ି ବଢ଼ି ଚାଲିଛି । କେବଳ ବାଘ ନୁହେଁ ମହାରାଷ୍ଟ୍ର ବ୍ୟତୀତ ଭାରତର ଅନ୍ୟ ଅଞ୍ଚଳରୁ ହାତୀ ବଂଶ କ୍ରମେ ଲୋପ ପାଇଯାଉଛି । ଶୀତ ଋତୁରେ ଶହ ଶହ ସଂଖ୍ୟାରେ ଚିଲିକାକୁ ଆସୁଥିବା ସାଇବେରିଆନ କ୍ରେନ ପକ୍ଷୀଙ୍କ ସଂଖ୍ୟା ମଧ୍ୟ ବହୁତ କମି-ଯାଇଛି । ଚିଲିକାରେ ମାଛ କମ୍ ଓ ପାଣି ଲବଣାକ୍ତ ହେଉଥିବାରୁ ଏହି ପକ୍ଷୀଙ୍କ ସଂଖ୍ୟା ବହୁ ଗୁଣରେ କମି ଯାଇଛି । ଚିଲିକା ହ୍ରଦ ବର୍ତ୍ତମାନ ଯେଉଁପରି କ୍ରମେ ପୋତିହେବାରେ ଲାଗିଛି, ଏହି ପ୍ରକ୍ରିୟା ଯଦି ଚାଲୁ ରହେ ତେବେ ଆସନ୍ତା ଏକଶହ ବର୍ଷ ମଧ୍ୟରେ ଏହା ସମ୍ପୂର୍ଣ୍ଣ ରୂପେ ପୋତି ହୋଇପଡ଼ି ଧାନଜମିରେ ପରିଣତ ହୋଇଯିବ ବୋଲି ବିଶେଷଜ୍ଞ ମାନେ କହିଲେଣି ।

ତେଣୁ ଏବେ ପୃଥିବୀ ପୃଷ୍ଠରେ ଏହି ଯେଉଁ ଅବସ୍ଥା ଦେଖା-

ହେଉଛି ଏହା ପ୍ରାକୃତିକ ନୁହେଁ ବରଂ ମଣିଷକୃତ ଦୁର୍ବିପାକ ବୋଲିବାକୁ ହେବ । ଏଥିପାଇଁ ଆମେ ପୃଥିବୀ ପୃଷ୍ଠର ମଣିଷ ସମାଜ ସମ୍ପୂର୍ଣ୍ଣ ରୂପେ ଦାୟୀ । ନିର୍ବିକାର ଭାବରେ କିଛି ଆଗପଛ ନଭାବି ଆମେ ପ୍ରକୃତି ଉପରେ ଆଉ କେତେଦିନ ଅତ୍ୟାଚାର କରି ଚାଲିବା ? ବହୁ ଦେଶର ନେତୃବୃନ୍ଦ, ଆମ ଦେଶର ପ୍ରଧାନମନ୍ତ୍ରୀ ପ୍ରମୁଖ ପରିବେଶ ସୁରକ୍ଷା, ଜଙ୍ଗଲ ରକ୍ଷା ଇତ୍ୟାଦି ବିଷୟରେ ଗୁରୁତ୍ୱ ଦେଉଥିଲେ ମଧ୍ୟ କାର୍ଯ୍ୟରେ ଠିକ୍ ତାହାର ଓଲଟା ହେଉଛି ।

ପୂର୍ବେ ଆମ ରାଜ୍ୟ ଓଡ଼ିଶାର ପୂର୍ବଘାଟଜାତ ଅଞ୍ଚଳ ସମେତ ବହୁ ଅଞ୍ଚଳରେ ଘନ ଜଙ୍ଗଲ ପୂର୍ଣ୍ଣ ଥିଲା । ଅବସ୍ଥା ଏପରି ଥିଲା ଯେ ଜଙ୍ଗଲ ରାସ୍ତା ଭିତର ଦେଇ ଲୋକେ ଦିନବେଳା ମଧ୍ୟ ଗାଡ଼ିରେ ଯିବାକୁ ଭୟ କରୁଥିଲେ । କୋରାପୁଟ, କେନ୍ଦୁଝର, ଫୁଲବାଣୀ, ବଲାଙ୍ଗୀର ଜିଲ୍ଲାମାନଙ୍କରେ ଜଙ୍ଗଲ ସମ୍ପଦ ମୁଖ୍ୟ ଥିଲା । ଏହା ବ୍ୟତୀତ ଅନ୍ୟ ଜିଲ୍ଲାମାନଙ୍କରେ ମଧ୍ୟ ଜଙ୍ଗଲ ରହିଥିଲା । ବହୁ ଝରଣା, ଜଳପ୍ରପାତ ଓ ଜୀବଜନ୍ତୁ ରହି ପ୍ରାକୃତିକ ଭାରସାମ୍ୟ ରକ୍ଷା ସହିତ ଏକ ଅପୂର୍ବ ପରିବେଶ ସୃଷ୍ଟି କରୁଥିଲେ ।

ଆମ ରାଜ୍ୟରେ ୧୯୭୫ ମସିହାରେ ୧ ଲକ୍ଷ ୬୫ ହଜାର ବର୍ଗ କିଲୋମିଟର ସ୍ଥଳଭାଗରୁ ୬୭ ହଜାର ୪୬୧ ବର୍ଗ କିଲୋମିଟର ଜଙ୍ଗଲ ରହିଥିଲା । ଜଙ୍ଗଲ ବିଭାଗର ହିସାବ ଅନୁସାରେ ୧୯୮୧-୮୨ ରେ ରାଜ୍ୟରେ ଜଙ୍ଗଲ ପରିମାଣ ଥିଲା ୩୯ ହଜାର ୧୯୮ ବର୍ଗ କିଲୋମିଟର । ଏଥିମଧ୍ୟରୁ ୨୮ ହଜାର ୮୧୨ ବର୍ଗ କିଲୋମିଟର ଘଞ୍ଚ ଜଙ୍ଗଲ ଓ ବାକୀ ଅଞ୍ଚଳ ଖୋଲା ଜଙ୍ଗଲ ରହିଥିଲା ।

ମାତ୍ର ଏବେ ଉପଗ୍ରହ ମାଧ୍ୟମରେ ମିଳିଥିବା ଆକାଶମାର୍ଗରୁ ସଂଗୃହୀତ ତଥ୍ୟରୁ ଜଣାଯାଏ ଯେ ଜଙ୍ଗଲ ପରିମାଣ ୪୮ ହଜାର ୧୪୯ ବର୍ଗ କିଲୋମିଟର ଏବଂ ୧୯୮୧ ରୁ ୧୯୮୭ ମସିହା ମଧ୍ୟରେ ରାଜ୍ୟର ପ୍ରାୟ ୧୫ ହଜାର ବର୍ଗ କିଲୋମିଟର ଅଞ୍ଚଳର ଜଙ୍ଗଲ ଧ୍ୱଂସ ହୋଇ-

ଯାଇଛି । କେବଳ କଟକ, ପୁରୀ, ଗଞ୍ଜାମ, ଢେଙ୍କାନାଳ, ବଲାଙ୍ଗୀର, ସୁନ୍ଦରଗଡ଼ ଜିଲ୍ଲାମାନଙ୍କରେ ୭ ହଜାର ୩୯୩ ବର୍ଗ କିଲୋମିଟର ଜଙ୍ଗଲ ଏହି ସମୟ ମଧ୍ୟରେ ପତିତ ଜଙ୍ଗଲରେ ପରିଣତ ହୋଇ-ଯାଇଛି ।

ଏକ ହିସାବରୁ ଜଣାଯାଇଛି ଯେ ଆମ ରାଜ୍ୟର ଏବେ ମୋଟ ଜଙ୍ଗଲ ପରିମାଣ ସମଗ୍ର ଭୂଭାଗର ମୋଟ ମାତ୍ର ୧୫ ଭାଗ । ଏଥିରୁ ଆମ ରାଜ୍ୟର ଜଙ୍ଗଲ ସମ୍ପଦ କପରି ଦ୍ରୁତ ଗତିରେ ନଷ୍ଟ ହୋଇଯାଉଛି ତାହା ଅନୁମାନ କରାଯାଇପାରେ । ବିଭିନ୍ନ ପ୍ରକଳ୍ପ ତଥା ଯୋଜନା ପାଇଁ ତଥା ଚୋରା କାଠ ବେପାରୀମାନେ ନିର୍ବିକାରରେ ଯେପରି କାଠ କାଟି ନେଉଛନ୍ତି ତାହାର ପରିଣାମରେ ଏପରି ଅବସ୍ଥା ହୋଇଛି । ଏବେ ମଧ୍ୟ ଆଦିବାସୀ ଅଞ୍ଚଳରେ ଜଙ୍ଗଲରେ ପୋଡୁଚାଷ କରାଯାଇ ବିସ୍ତୀର୍ଣ୍ଣ ଜଙ୍ଗଲ ଅଞ୍ଚଳରେ ନିଆଁ ଲଗାଇ ଦିଆଯାଉଛି । ରକ୍ଷକ ଭକ୍ଷକ ହୋଇ କେତେକ ସ୍ଥଳରେ ଜଙ୍ଗଲ ନଷ୍ଟ ପାଇଁ ଦାୟୀ ହେଉଛନ୍ତି । ରାଜନୈତିକ ନେତାଙ୍କ ହସ୍ତକ୍ଷେପ ମଧ୍ୟ କେତେକ ସ୍ଥଳରେ କାର୍ଯ୍ୟକାରୀ ହେଉଛି । ଗୋଟିଏ ଶାଳଗଛ ବଢ଼ି ଶକ୍ତ ହେବାକୁ ଏକଶହରୁ ଅଧିକ ବର୍ଷ ସମୟ ନେଇଥାଏ । ତେଣୁ ପ୍ରତ୍ୟେକ ଗଛକୁ ବଢ଼ାଇବା ଓ ନୂତନ ଜଙ୍ଗଲ ସୃଷ୍ଟି କରିବା ନିଶ୍ଚିତଭାବେ ସମୟସାପେକ୍ଷ ।

ବର୍ତ୍ତମାନ ଜାଳେଣୀ କାଠର ମୂଲ୍ୟ ଅସମ୍ଭବ ଭାବରେ ବଢ଼ି-ଯାଇଛି । ଏବେଠାରୁ ଜାଳେଣୀ କାଠର ସଙ୍କଟ ଦୂର କରିବାକୁ ଗ୍ରାମ୍ୟ ଉପକଣ୍ଠରେ ନୂତନ ଜଙ୍ଗଲ ସୃଷ୍ଟି ହେବା ଦରକାର । ଜଙ୍ଗଲ ବଢ଼ିଲେ ଅନେକ ଗାଁ ଲୋକଙ୍କର ନିତିଦିନିଆ ଆବଶ୍ୟକତା ପୂରଣ ହୋଇ-ପାରିବ । ଗୋଟିଏ ଗ୍ରୋଟ ପରିବାର ପଚିଶଟି ଗଛ ନିଜ ବାଡ଼ିରେ ଲଗାଇଲେ ବର୍ଷସାରା ଜାଳେଣୀକାଠ ଏଥିରୁ ପାଇପାରିବେ ।

ପୂର୍ବେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଥିବା ଘଞ୍ଚ ଜଙ୍ଗଲ ଏବେ ନଷ୍ଟ ହୋଇଯାଇଛି । ବଲାଙ୍ଗୀର ଜିଲ୍ଲାରେ ଥିବା ଜଙ୍ଗଲ ସମ୍ପଦ ଏବେ ଶତକଡ଼ା ୮।୧୦ ଭାଗକୁ କମି ଆସିଛି । ଏହି ଜିଲ୍ଲାରେ ଦ୍ରୁତ ଶିଳ୍ପ

ପ୍ରତିଷ୍ଠା ଯଥା ସଇଁତଳା ଗୋଳାବାରୁଦ କାରଖାନା, ଗନ୍ଧମାର୍ଦ୍ଦନ ଓ ବାଲକୋ ପ୍ରଭୃତି ପ୍ରକଳ୍ପ ଦ୍ୱାରା ବହୁ ଜଙ୍ଗଲ ନଷ୍ଟ ହୋଇ ସାରିଲାଣି । ଜିଲ୍ଲାର ବିରାଟ ସାଗୁଆନ କାଠ ଜଙ୍ଗଲ 'ମହାଖଣ୍ଡ' ଓ ଅନ୍ୟାନ୍ୟ ଜଙ୍ଗଲରୁ ମୂଲ୍ୟବାନ କାଠ ସବୁ ଉଭେଇ ଗଲାଣି । ଜଙ୍ଗଲ ଧ୍ୱଂସ ଫଳରେ ଜିଲ୍ଲାରେ ମଧ୍ୟ ବୃଷ୍ଟିପାତରେ ଘୋର ଅନିୟମିତତା ଦେଖାଦେଇଛି ଓ ଅଳ୍ପ ବୃଷ୍ଟି ହେବା ଆରମ୍ଭ ହୋଇଛି । ପ୍ରବଳ ବନ୍ୟା ୧୯୮୦, ୮୨, ୮୫ ମସିହାରେ ଏହି ଜିଲ୍ଲାରେ ହଇଚଇ ସୃଷ୍ଟି କରିଛି । ପୂର୍ବେ କ୍ରମାଗତ ଏପରି ଭୀଷଣ ବନ୍ୟା ଏହି ଜିଲ୍ଲାରେ ଦେଖାନଥିଲା । ଓଡ଼ିଶାର କୋରାପୁଟ, କଳାହାଣ୍ଡି, ଫୁଲବାଣୀ ଇତ୍ୟାଦି ଅନ୍ୟାନ୍ୟ ଜିଲ୍ଲାର ଅବସ୍ଥା ମଧ୍ୟ ଏହିପରି ହୋଇଛି ।

ଜଙ୍ଗଲ ନଷ୍ଟ ହେଲେ ବର୍ଷା ହେବନାହିଁ । ପାଣିପାଗ ଓ ପରିବେଶ ଉପରେ ଏହାର ପ୍ରଭାବ ପଡ଼ିବ । ମରୁଭୂମି ବଢ଼ିବ । ଉର୍ବର ମୃତ୍ତିକା ଧ୍ୱଂସ ପ୍ରାପ୍ତ ହେବ—ଏକଥା ପ୍ରତି ଆମେମାନେ କେହି ବର୍ତ୍ତମାନ ଲକ୍ଷ ନ କରି ନିର୍ବିକାରରେ ଜଙ୍ଗଲ ଧ୍ୱଂସ କରି ଚାଲିଛୁ । ମାତ୍ର ଏହି ଅବସ୍ଥା ଯଦି ଚାଲୁ ରହେ ଜଙ୍ଗଲ ସମ୍ପଦକୁ ସମୂଳେ ବିନାଶ କରିବାକୁ ଆମକୁ ଆଉ କେତେଦିନ ଲାଗିବ । ମାନବ ସମାଜକୁ ତଥା ପ୍ରକୃତିକୁ ରକ୍ଷା କରିବାକୁ ହେଲେ ନୂତନ ଜଙ୍ଗଲ ସୃଷ୍ଟି କରିବାକୁ ଆଜଠାରୁ ଆମ ସମସ୍ତଙ୍କୁ ଶପଥ ନେବାକୁ ହେବ । ନଚେତ ନିକଟ ଭବିଷ୍ୟତରେ ଆମ ରାଜ୍ୟ ଏକ ପ୍ରକାର ଜଙ୍ଗଲ ଶୂନ୍ୟ ହେବ ଏବଂ ଆମ ଦେଶ ତଥା ପୃଥିବୀରେ ମହାପ୍ରଳୟ ଦେଖାଦେବ । ଏହି ଜାତୀୟ ତଥା ଆନ୍ତର୍ଜାତିକ ବିପତ୍ତିର ଗୁରୁତ୍ୱ ଆମେ ସମସ୍ତେ ଉପଲବ୍ଧି କରିବା ଆବଶ୍ୟକ । ନଚେତ ଜଙ୍ଗଲ ଧ୍ୱଂସ ସହିତ ମୃତ୍ତିକା କ୍ଷୟ ଘଟି ଆମ ଓଡ଼ିଶା ଯେ ଭବିଷ୍ୟତରେ ମରୁଭୂମି ନ ହେବ ତାହା କିଏ କହିବ ? ଭବିଷ୍ୟତର ଏହି ବିପତ୍ତିରୁ ଆମେ କଣ ଆମ ରାଜ୍ୟ ଓ ଦେଶକୁ ରକ୍ଷା କରି ପାରିବା ନାହିଁ ? ଏହା ଆଜି ଆମ ସମସ୍ତଙ୍କର ଆଲୋଚନାର ବିଷୟ ହେବା ଆବଶ୍ୟକ ।

